# ପ୍ରୀତି ଶତକ

ସଦ୍ୟାନନ୍ଦ ଚମ୍ପତିରାୟ

ଆନନ୍ଦ ପ୍ରକାଶନୀ
· ବୁଦ୍ଧନଗର · ଭୁବନେଶ୍ୱର ·

# PREETI SHATAK

ORIYA TRANSLATION OF
AMARU SHATAKAM

( A CENTUM OF LOVE LYRICS,
BY POET AMARUK )

**SATYANAND CHAMPATIRAY, M. A.**

*Published by* :—
**ANAND PRAKASHANEE**
SWASTIKA BUILDINGS
Budhanagar, Bhubaneswar-6

First Impression, 1'71
PRICE RUPEES FIFTEEN ONLY.



ପ୍ରୀତି-ଶତକ

( ଅମରୁକ କବି ବିରଚିତ
"ଅମରୁ ଶତକମ୍"ର
ଓଡ଼ିଆ ଭାଷାନ୍ତର )

ସତ୍ୟାନନ୍ଦ ଚମ୍ପତିରାୟ

ପ୍ରକାଶକ :—
ଆନନ୍ଦ ପ୍ରକାଶନୀ
ସ୍ୱସ୍ତିକା, ବୁଦ୍ଧନଗର, ଭୁବନେଶ୍ୱର-୬

୧ମ ସଂସ୍କରଣ,
ମୂଲ୍ୟ—ପନ୍ଦର ଟଙ୍କା



ଶିଳ୍ପୀ :—
୰ ଗୋପାଳ କାନୁନ୍‌ଗୋ
ଶ୍ରୀ ଉଦୟ ନାରାୟଣ ଜେନା
ଶ୍ରୀ ରବିନାରାୟଣ ନାୟକ
ଶ୍ରୀ ଗୋକୁଳ ପଟ୍ଟନାୟକ






''ଅମରୁ ଶତକ'' ଗ୍ରନ୍ଥ ଏବେ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ । ଏଇ 'ଅମରୁ-ଶତକ' ଓ ତହିଁ ସଙ୍ଗେ କାମଶାସ୍ତ୍ର ଘେନ ଏ ଦେଶରେ ବହୁ କିମ୍ବଦନ୍ତୀ ଅଛି । ଏ କିମ୍ବଦନ୍ତୀର ପୀଠ ହେଉଛନ୍ତି ଶଙ୍କରାଚାର୍ଯ୍ୟ ଓ ମଣ୍ଡନ ମିଶ୍ରଙ୍କ ସ୍ତ୍ରୀ ଉଭୟ-ଭାରତୀ । ଶଙ୍କରଙ୍କ କାୟା-ପ୍ରବେଶ ଘେନ ମୂଳ କିମ୍ବଦନ୍ତୀରେ ଗୋଟିଏ ଗଳ୍ପ ଅଛି । ଏହି କାୟା-ପ୍ରବେଶ କଥାଟି ପୂର୍ବେ ତନ୍ତ୍ର ଯୁଗରେ ଭିନ୍ନ ଭିନ୍ନ କାଳରେ ଭିନ୍ନ ଭିନ୍ନ ପରିସ୍ଥିତିରେ ଖୁବ୍ ଚର୍ଚ୍ଚା କରାଯାଇଛି ।



ଆଚାର୍ଯ୍ୟ ଶଙ୍କରଙ୍କ ଇୟେ ଗୋଟିଏ ବିଶେଷତ୍ୱ ନୁହେଁ । କଣ ଘଟିଥିଲା ଏବେ ଜାଣିବା ବଡ଼ ଦୁଷ୍କର । କିନ୍ତୁ ଏହି କାବ୍ୟ ପ୍ରବେଶ ଘେନି ଶଙ୍କରାଚାର୍ଯ୍ୟଙ୍କ ଯଶ ଓ ତା' ପରେ ସ୍ୱାମୀମାନଙ୍କ ବହୁତ ବର୍ଦ୍ଧମାନ କରାଯାଇଅଛି । ଏହା ସତ୍ୟ ହେଉ ବା ମିଥ୍ୟା ହେଉ ଭରତର ତାନ୍ତ୍ରିକ ଯୁଗର ଇୟେ ଏକ ବିଶେଷତ୍ୱ ।

"ଅମରୁ ଶତକ"ରେ ଆଚାର୍ଯ୍ୟ ଶଙ୍କରଙ୍କ ଶୃଙ୍ଗାର ରସ ଚର୍ଚ୍ଚା ହୋଇଛି ବୋଲି କୁହାଯାଏ । ଇୟେ କଥା ଚମ୍ପତିରାୟଙ୍କ ଓଡ଼ିଆ ଅନୁବାଦଟି ପଢ଼ିଲେ ଜଣାଯିବ । ୟୁରୋପର ଜର୍ମାନୀ ପ୍ରଭୃତିରେ ଏହାର ବହୁତ ଆଲୋଚନା ହୋଇଛି । ସେହି ଅନୁବାଦ ଶୈଳୀରେ ଇୟେ ଅନୁବାଦଟି ହୋଇଛି ବୋଲି ମନେହୁଏ ।

ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ- ସାଧୁ ସାଧୁ !

**ନୀଳକଣ୍ଠ ଦାସ**

ତା ୨୩ । ୧୧ । ୬୩

# ମୁଖବନ୍ଧ

ସଂସ୍କୃତ ସାହିତ୍ୟ ଜଗତରେ ଅମରୁକଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ଓ ସମ୍ମାନର ଅଧିକାରୀ । 'ଅମରୁଶତକ' ନାମରେ ପ୍ରଚଳିତ ତାଙ୍କର ଏକମାତ୍ର ଶୃଙ୍ଗାରରସାତ୍ମକ କୃତି ତାଙ୍କୁ ଅମରତା ପ୍ରଦାନ କରିଅଛି । କବିକୃତି ହିଁ କବିର ଶ୍ରେଷ୍ଠ ପରିଚୟ । ତେଣୁ କୃତିରେ କୃତିତ୍ୱ ବ୍ୟତୀତ ଅମରୁକ କବିଙ୍କ ଅନ୍ୟ କିଛି ସବିଶେଷ ପରିଚୟ ନାହିଁ । କେହି କେହି ଅମରୁକକବିଙ୍କୁ କାଶ୍ମୀର ରାଜା ବୋଲି ମାନି, ମଣ୍ଡନମିଶ୍ରଙ୍କ ପତ୍ନୀ ଉଭୟଭାରତୀଙ୍କ କାମକଳା ସମ୍ବନ୍ଧୀୟ ପ୍ରଶ୍ନର ଉତ୍ତର ଦେବାପାଇଁ ଶଙ୍କରାଚାର୍ଯ୍ୟ ମୃତ-ଅମରୁକଙ୍କ ଶରୀରରେ ପ୍ରବେଶକରି ତାଙ୍କର ଶତପତ୍ନୀଙ୍କ ସହ ସହବାସକରି କାମକଳାରେ ନିପୁଣ ହେବାପରେ ଯେଉଁ ଶତକ ରଚନା କରିଥିଲେ, ତାହାହିଁ ଅମରୁଶତକ ବୋଲି କହିଥା'ନ୍ତି । କିନ୍ତୁ ଅମରୁଶତକ ପାଠକଲେ ସ୍ପଷ୍ଟ ଜଣାଯାଏ ଯେ, ଏଥିରେ ଶଙ୍କରାଚାର୍ଯ୍ୟଙ୍କ ପ୍ରତି ଉଭୟଭାରତୀ ଶାରଦାଙ୍କ ପ୍ରଶ୍ନ—'କଳାଃ କିୟତ୍ୟୋ ବଦ ପୁଷ୍ପଧନ୍ୱନଃ' ଇତ୍ୟାଦିର ଉତ୍ତର ନାହିଁ ଏବଂ ଏହା ଶାସ୍ତ୍ରୀୟ କାମପ୍ରପଞ୍ଚ ବା କାମଶାସ୍ତ୍ରର ଆଲୋଚନା ପାଇଁ ଉଦ୍ଦିଷ୍ଟ ହୋଇନାହିଁ । ବରଂ କେତେକ ମୁହୂର୍ତ୍ତର ବୈୟକ୍ତିକ ତୀବ୍ର ଅନୁଭୂତିକୁ ନେଇ ରଚିତ ଅମରୁକଙ୍କ ପ୍ରତ୍ୟେକ କବିତା ନାୟକନାୟିକାଙ୍କ ଚିରନ୍ତନ ପ୍ରେମାନୁଭୂତିର ନିଖୁଣ ଚିତ୍ର ପ୍ରଦାନ କରୁଥିବାରୁ ରସୋଜ୍ଜ୍ୱଳ ଓ ଉପଭୋଗ୍ୟ ହୋଇ ପାରିଛି । ପ୍ରେମିକ-ପ୍ରେମିକାଙ୍କ ରାଗ, ମାନ, ମିଳନ, ବିରହର ପୃଷ୍ଠପଟରେ ରଚିତ ତାଙ୍କର ପ୍ରତ୍ୟେକ ଶ୍ଳୋକ ରସାଭିବ୍ୟଞ୍ଜକତାକୁ ନେଇ ଏକ ସ୍ୱତନ୍ତ୍ର ମୁକ୍ତକ ଶ୍ରେଣୀୟ କବିତା ।

ମୁକ୍ତ (ମୁଚ୍ + କ୍ତ) ଶବ୍ଦ ପରେ ହ୍ରସ୍ୱ ଓ ସଂଜ୍ଞା ଅର୍ଥରେ କନ୍ ପ୍ରତ୍ୟୟ (୧) ହୋଇ ସୃଷ୍ଟି ହୋଇଥିବା ମୁକ୍ତକ ଶବ୍ଦର ଅର୍ଥ ହେଉଛି—'ଯାହା ହ୍ରସ୍ୱ ବା କ୍ଷୁଦ୍ର କଳେବର ବିଶିଷ୍ଟ ହୋଇ ମଧ୍ୟ ଅନ୍ୟ ନିରପେକ୍ଷ ଓ ସ୍ୱୟଂ ସମ୍ପୂର୍ଣ୍ଣ' (ମୁଚ୍ୟତେ ଇତି ମୁକ୍ତମ୍, ତଦେବ ହ୍ରସ୍ୱଂ ଦ୍ରବ୍ୟଂ ମୁକ୍ତକମ୍) । ଅଗ୍ନିପୁରାଣରେ କେବଳ ଚମତ୍କାର ସୃଷ୍ଟିରେ ସମର୍ଥ ଶ୍ଳୋକକୁ ମୁକ୍ତକ କୁହାଯାଇଛି (୨) । ଏହି ଚମତ୍କାର କ୍ଷମ ବିଶେଷଣରୁ ଜଣାଯାଏ ଯେ ମୁକ୍ତକର ରସ ସୃଷ୍ଟିରେ

---

(୧) ହ୍ରସ୍ୱେ (୫।୩।୮୬)
ସଂଜ୍ଞାୟାଂ କନ୍ (୫।୩।୮୭) ଇତି ପାଣିନୀୟମ୍ ।

(୨) 'ମୁକ୍ତକଂ ଶ୍ଳୋକ ଏବୈକଶ୍ଚମତ୍କାରକ୍ଷମଃ ସତାମ୍'—(ଅଗ୍ନି ପୁରାଣ ୩୩୭।୩୬)

ସାମର୍ଥ୍ୟ ନେଇ ଅଗ୍ନି ପୁରାଣକାରଙ୍କ ସନ୍ଦେହ ଥିଲା । କାରଣ ଅଳଙ୍କାରବାଦୀ ଓ ରସବାଦୀ ଦୃଷ୍ଟି-କୋଣର ସମନ୍ୱୟ ସାଧନ କରି ସେ କହିଥିଲେ—'କାବ୍ୟରେ ବାଗ୍ ବୈଦଗ୍ଧ୍ୟ ପ୍ରଧାନ ହେଲେ ମଧ୍ୟ ରସ ହିଁ ତାର ଜୀବନ' (୧) ଅଥଚ ମୁକ୍ତକରେ କେବଳ ଚମତ୍କାର ସୃଷ୍ଟିକୁ ହିଁ ସେ ଲକ୍ଷଣ କରି ନେଇଛନ୍ତି । କିନ୍ତୁ ମୁକ୍ତକରେ ମଧ୍ୟ ରସ ସୃଷ୍ଟି ସମ୍ଭବ—ଏ କଥା ପ୍ରଥମ ଥରପାଇଁ ବ୍ୟକ୍ତ କରି ଧ୍ୱନିକାର କହନ୍ତି—'ପ୍ରବନ୍ଧ ବା ମୁକ୍ତକରେ ରସନିର୍ବାହ କରିବା ପାଇଁ ଇଚ୍ଛୁକ କବି ବିରୋଧିଭାବମାନଙ୍କୁ ପରିହାର କରିବା ଉଚିତ' (୨) । କେବଳ ସେତିକି ନୁହେଁ, ସେ ଉଦାହରଣ ଉପନ୍ୟାସ ପୂର୍ବକ କହିଗଲେ ଯେ—'ପ୍ରବନ୍ଧଭଳି ମୁକ୍ତକରେ ମଧ୍ୟ ରସ ନିର୍ବାହକ କବି ଦେଖାଯାଆନ୍ତି । ଯଥା ଅମରୁକ କବିଙ୍କ ଶୃଙ୍ଗାର ରସ ନିଃସ୍ୟନ୍ଦୀ ପ୍ରସିଦ୍ଧ ମୁକ୍ତକ' (୩) । ଏହାପରେ ଧ୍ୱନ୍ୟାଲୋକର ପ୍ରସିଦ୍ଧ ଲୋଚନ ଟୀକାକାର ମୁକ୍ତକର ପରିଭାଷା ନିରୂପଣ କରି କହିଲେ—

'ପୂର୍ବାପର ନିରପେକ୍ଷେଣାପି ଯେନ ରସଚର୍ବଣା କ୍ରିୟତେ ତଦେବ ମୁକ୍ତକମ୍'—

ଅର୍ଥାତ୍, ପୂର୍ବାପର ସମ୍ବନ୍ଧ ନିରପେକ୍ଷ ହୋଇ ଯେଉଁ ପଦ୍ୟ ବା କବିତା ସ୍ୱତଃ ଏକାକୀ ରସ ଚର୍ବଣା ପାଇଁ ସମର୍ଥ, ତାହା ମୁକ୍ତକ ନାମରେ ଅଭିହିତ । ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ ମଧ୍ୟ ଛନ୍ଦୋବଦ୍ଧ ସ୍ୱକୀୟ କ୍ରିୟାପଦ ବିଶିଷ୍ଟ ଗୋଟିଏ ସ୍ୱତନ୍ତ୍ର ଶ୍ଳୋକକୁ ମୁକ୍ତକ କହିଛନ୍ତି (୪) । ତେଣୁ ଗୋଟିଏ ଶ୍ଳୋକ ବା କବିତାର ସଂକ୍ଷିପ୍ତ ପରିସର ମଧ୍ୟରେ ଏକ ସରସ ମୁକ୍ତ ଭାବର ସ୍ପଷ୍ଟ ଚିତ୍ରଣକୁ ମୁକ୍ତକ କୁହାଯାଇ ପାରେ ।

କବିବର ଅମରୁକଙ୍କ ଶ୍ଳୋକଚୟ ଏହି ମୁକ୍ତକ ଶ୍ରେଣୀର ଅନ୍ତର୍ଭୁକ୍ତ । ପ୍ରତ୍ୟେକ ପଦ୍ୟ ସ୍ୱତନ୍ତ୍ର ଓ ସ୍ୱୟଂ ସଂପୂର୍ଣ୍ଣ ହୋଇ ଏକ ସରସ ଭାବ ପ୍ରକାଶ କରୁଥିବାରୁ, ଭାବର ପରି-ପୂର୍ଣ୍ଣତା, କଳାର ସୌଷ୍ଠବ ଓ ଭାଷାର ସମାସ ଶକ୍ତିନେଇ ପ୍ରତ୍ୟେକଟି ଆଦର୍ଶସ୍ଥାନୀୟ । ତେଣୁ ହିଁ 'ଅମରୁଶତକ' ସଂସ୍କୃତ ସାହିତ୍ୟରେ ଉଚ୍ଚାଙ୍ଗ ମୁକ୍ତକର ପ୍ରକୃତ ପ୍ରତିନିଧିତ୍ୱ କରେ । ସଂସ୍କୃତ ସାହିତ୍ୟର ଆଦି ମୁକ୍ତକ ଭାବପ୍ରବଣ ବୈଦିକ ସୂକ୍ତାବଳୀଠାରୁ ଆରମ୍ଭ କରି ପାଲି ଥେରି ଗାଥା ଓ ପ୍ରାକୃତ ଗାଥା କବିତାର ଅଖଣ୍ଡ ପରମ୍ପରା ପର୍ଯ୍ୟନ୍ତ ନଜର କରି ଅମରୁକଙ୍କ ମୁକ୍ତକ ସାର୍ଥକ ଓ ସଫଳ ସୃଷ୍ଟି ବୋଲି ବିବେଚିତ ହୋଇଥାଏ ।

---

(୧) ବାଗ୍‌ବୈଦଗ୍ଧ୍ୟପ୍ରଧାନେଽପି ରସ ଏବାତ୍ର ଜୀବିତମ୍—(ଅଗ୍ନି ପୁରାଣ, ୩୩୬।୩୩)

(୨) ପବନ୍ଧେ ମୁକ୍ତକେ ବାଽପି ରସାଦୀନ୍ ବନ୍ଧୁମିଚ୍ଛତା ।
ଯତ୍ନଃ କାର୍ଯ୍ୟଃ ସୁମତିନା ପରିହାରେ ବିରୋଧିନାମ୍ ॥ (ଧ୍ୱନ୍ୟାଲୋକଃ)

(୩) ମୁକ୍ତକେଷୁ ହି ପ୍ରବନ୍ଧେଷ୍ୱିବ ରସବନ୍ଧାଭିନିବେଶିନଃ କବୟୋ ଦୃଶ୍ୟନ୍ତେ । ଯଥା ହ୍ୟମରୁକସ୍ୟ କବେର୍ମୁକ୍ତକାଃ ଶୃଙ୍ଗାରରସସ୍ୟନ୍ଦିନଃ ପ୍ରବନ୍ଧାୟମାନାଃ ପ୍ରସିଦ୍ଧା ଏବ ।
(—ଧ୍ୱନ୍ୟାଲୋକଃ, ତୃତୀୟ ଉଦ୍ୟୋତଃ)

(୪) 'ଛନ୍ଦୋବଦ୍ଧଂ ପଦଂ ପଦ୍ୟଂ ତେନୈକେନ ଚ ମୁକ୍ତକମ୍' ଇତି
(—ସାହିତ୍ୟ ଦର୍ପଣଃ, ୬ଷ୍ଠ ପରିଚ୍ଛେଦଃ)

ତାତ୍‌କାଳୀନ ବିଳାସବହୁଳ ଦାମ୍ପତ୍ୟଜୀବନ ଓ ପ୍ରଣୟ ବ୍ୟାପାରର ସରସ ସ୍ୱଚ୍ଛନ୍ଦ ଚିତ୍ର ପ୍ରତିଟି ମୁକ୍ତକରେ ଏପରି ସାର୍ଥକ ଭାବରେ ପ୍ରକାଶ ପାଇଛି ଯେ, ଅମରୁଶତକର ପ୍ରତ୍ୟେକ ପଦ୍ୟର କାବ୍ୟିକ ମୂଲ୍ୟ ବହୁଗୁଣରେ ଅଧିକ । ତେଣୁ ହିଁ ଧ୍ୱନି ପ୍ରସ୍ଥାପନାଚାର୍ଯ୍ୟ ଆନନ୍ଦବର୍ଦ୍ଧନ (ଖ୍ରୀ୯୫୦) ସ୍ୱୀୟ ଧ୍ୱନ୍ୟାଲୋକରେ ଅମରୁକଙ୍କ ନାମୋଲ୍ଲେଖ କରିଯାଇଛନ୍ତି । ଧ୍ୱନ୍ୟାଲୋକକାରଙ୍କ ପରବର୍ତ୍ତୀ ପ୍ରାୟ ସମସ୍ତ ଆଲଙ୍କାରିକ ରସ ପ୍ରକରଣ ଓ ନାୟକ-ନାୟିକା ଭେଦ ପ୍ରକରଣରେ ଅମରୁଶତକରୁ ଉଦ୍ଧରଣ ଦେଇଛନ୍ତି । ଆନନ୍ଦବର୍ଦ୍ଧନଙ୍କ ପୂର୍ବବର୍ତ୍ତୀ ବାମନ (ଖ୍ରୀ ୮ମ ଶତାବ୍ଦୀ) ମଧ୍ୟ ଅମରୁକଙ୍କ ନାମୋଲ୍ଲେଖ ନ କରି ତାଙ୍କର ତିନୋଟି ପଦ୍ୟ ଉଦାହାରଣ ରୂପେ ଗ୍ରହଣ କରିଛନ୍ତି । ଏଥିରୁ ଅମରୁକ ଯେତେବେଳକୁ ପ୍ରସିଦ୍ଧି ଲାଭ କରିଥିବା ଅନୁମାନ କରି, ତାଙ୍କର ସମୟ ଖ୍ରୀ ୭୫୦ର ପୂର୍ବବର୍ତ୍ତୀ ବୋଲି କୁହାଯାଏ ।

ଅମରୁକ ଶତକରେ ପ୍ରତିପାଦ୍ୟ ରସ ହେଉଛି ଶୃଙ୍ଗାର । ଶୃଙ୍ଗାରରସର ସ୍ଥାୟୀ ଭାବ ରତି । ରତିର କ୍ଷେତ୍ର ଅତି ବ୍ୟାପକ ଓ ଏହାର ଆଧାର ସୌନ୍ଦର୍ଯ୍ୟ । ତେଣୁ ହୃଦୟର ଯେତେ ଗୂଢ଼ ବୃତ୍ତି ସହିତ ଏହାର ସମ୍ପର୍କ, ତାହା ଅନ୍ୟ କୌଣସି ସ୍ଥାୟୀ ଭାବରେ ନାହିଁ । ଅତଏବ ଶୃଙ୍ଗାର ରସକୁ ହିଁ ପ୍ରଧାନ ଓ ଏକମାତ୍ର ରସ ବୋଲି କେତେକ ଗ୍ରହଣ କରିଥାନ୍ତି (୧) । ସଂସ୍କୃତ ଆଲଙ୍କାରିକମାନେ ସର୍ବତଃ ସେଥିପାଇଁ ଶୃଙ୍ଗାର ରସକୁ ଆଦିରସ ନାମରେ ଅଭିହିତ କରିଯାଇଛନ୍ତି । କାବ୍ୟ ଜଗତରେ ଶୃଙ୍ଗାରରସର ପ୍ରାଧାନ୍ୟକୁ ସ୍ୱୀକାର କରି ଧ୍ୱନ୍ୟାଲୋକକାର ଆନନ୍ଦ ବର୍ଦ୍ଧନ କହିଛନ୍ତି —

ଶୃଙ୍ଗାର ଏବ ମଧୁରଃ ପରଃ ପ୍ରହ୍ଲାଦନୋ ରସଃ ।
ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତି ॥

କାବ୍ୟ ସୃଷ୍ଟିକୁ ସରସ ସୁନ୍ଦର ଓ ରସମୟ କରିବା ପାଇଁ ଶୃଙ୍ଗାରରସ ଓ ଶୃଙ୍ଗାରୀ କବି ହିଁ ସମର୍ଥ । ତେଣୁ ଭୋଜରାଜ କହିଛନ୍ତି—

'ଶୃଙ୍ଗାରୀ ଚେତ୍ କବିଃ କାବ୍ୟେ ଜାତଂ ରସମୟଂ ଜଗତ୍'—

କବି ଶୃଙ୍ଗାରୀ ହେଲେ କବିସୃଷ୍ଟି ସରସ ଓ ସାର୍ଥକ ହୋଇଥାଏ । ସଂସ୍କୃତ ସାହିତ୍ୟଜଗତରେ ଶୃଙ୍ଗାରରସାତ୍ମକ ଯେତେ ସୃଷ୍ଟି ଅଛି, ସେଥି ମଧ୍ୟରୁ ଅମରୁଶତକ ଅନ୍ୟତମ ସାର୍ଥକ ସୃଷ୍ଟି । କବିବର ଅମରୁ ପ୍ରେମିକ ପ୍ରେମିକାଙ୍କ ଦହନ, ହୃଦୟମନ୍ଥନ, ବିଚ୍ଛେଦନ ଓ ନିପୀଡ଼ନ ମଧ୍ୟରେ ପ୍ରେମର ପରାକାଷ୍ଠା ପ୍ରଦର୍ଶନ କରି ମିଳନରେ ସାର୍ଥକତା ପ୍ରତିପାଦନ

---

(୧) ଆମ୍ନାସିଷୁର୍ଦ୍ଦଶରସାନ୍ ସୁଧିୟୋ ବୟଂ ତୁ ।
ଶୃଙ୍ଗାରମେବ ରସନାଦ୍ ରସମାମନାମଃ ॥ (ଶୃଙ୍ଗାର ପ୍ରକାଶ)

କରିଛନ୍ତି । ଅନୁଭୂତିର ସୂକ୍ଷ୍ମତା, କଳ୍ପନାର ମନୋଜ୍ଞତା ମଧ୍ୟରେ ପ୍ରେମର ଅକଳନ ଭାବ ଓ ଭାବନାକୁ ରୂପ ଦେବାରେ, ପ୍ରେମିକ ପ୍ରେମିକାଙ୍କ ମାନ, ଅଭିମାନ, ପ୍ରଲୋଭନ, ପ୍ରତାରଣାକୁ ଚିତ୍ରଣ କରିବାରେ କବିଙ୍କର ଯେଉଁ ନିପୁଣତା ତାହା ଅସାଧାରଣ । ପୌଢ଼ ଅଳଙ୍କାର ଭାରରେ ଭାରାକ୍ରାନ୍ତ ନକରି ସେ ତାଙ୍କର କବିତା ସୁନ୍ଦରୀ ମୁଖରେ ଯେଉଁ ରସ-ପୂର୍ଣ୍ଣ ଭାଷା ଦେଇଛନ୍ତି, ତାହା ହିଁ ସହୃଦୟ ରସିକ ପାଠକଙ୍କୁ ସହଜେ ଆକୃଷ୍ଟ କରିନେଉଛି । ମିଳନର ଆଶା ଅଭିଳାଷ ନେଇ ଈର୍ଷା, ଅଭିମାନ, କ୍ରୋଧ, ନୈରାଶ୍ୟ, ବ୍ୟର୍ଥତାର ବହୁସ୍ତର ମଧ୍ୟରେ ଗତି କରି ପ୍ରେମିକର ସମ୍ଭୋଗରେ ଯେଉଁ ଚରିତାର୍ଥତା ଓ ଆତ୍ମତୃପ୍ତି—ସେ ସବୁର ଜୀବନ୍ତ ରସାଳ ଚିତ୍ରଣ ବିଭିନ୍ନ ଛନ୍ଦରେ ଅତି ସୁନ୍ଦର ଓ ସ୍ୱଚ୍ଛନ୍ଦ ଭାବରେ ହୋଇଥିବାରୁ, ଅମରୁଶତକ ପ୍ରସିଦ୍ଧି ଲାଭ କରିଛି ।

ପୃଥିବୀର କେତେକ ଭାଷାରେ ଏବଂ ପ୍ରାୟ ସମସ୍ତ ଭାରତୀୟ ଭାଷାରେ ଅମରୁଶତକର ବହୁ ଅନୁବାଦ ହୋଇ ସାରିଛି । ଓଡ଼ିଆ ପଦ୍ୟରେ ମଧ୍ୟ ଶ୍ରୀନିବାସ ନୃପ (ଆନୁମାନିକ ୧୭ଶ ଶତାବ୍ଦୀ)ଙ୍କର ଗୋଟିଏ ଟୀକା ଅପ୍ରକାଶିତ ଅବସ୍ଥାରେ ରହିଛି । କିନ୍ତୁ ଦୁଃଖର ବିଷୟ ଅମରୁଶତକର ପ୍ରଭୃତ ପ୍ରଭାବ ଓଡ଼ିଆ ରୀତି ଯୁଗୀୟ ସାହିତ୍ୟ ଉପରେ ପଡ଼ିଥିଲେ ହେଁ, ଏହାର ଭାବ ଓ ଭାଷାକୁ ସମତାଳରେ ଗତି କରାଇ ପାଠକମାନଙ୍କୁ ଆକର୍ଷଣ କଲାପରି କୌଣସି ଅନୁବାଦ ଓଡ଼ିଆରେ ଆଜି ପର୍ଯ୍ୟନ୍ତ ପ୍ରକାଶ ପାଇ ନ ଥିଲା । ଏହି ଅଭାବ ପୂରଣ ପାଇଁ ଓଡ଼ିଶାର ଅନ୍ୟତମ ଲବ୍ଧପ୍ରତିଷ୍ଠ କବି ଶ୍ରୀଯୁକ୍ତ ସତ୍ୟାନନ୍ଦ ଚମ୍ପତିରାୟଙ୍କ ବହୁଦିନରୁ ଏକ ହାର୍ଦ୍ଦିକ ଅଭୀପ୍‌ସା ଥିଲା । ସେହି ବଳବତୀ ଅଭୀପ୍‌ସା, ଆଜି ଫଳବତୀ ହୋଇ 'ପ୍ରୀତିଶତକ' ନାମରେ ଆତ୍ମପ୍ରକାଶ କରିଛି ।

କବି ମାନେ ହିଁ ପ୍ରେମିକ ❀ । ପ୍ରେମ କରି ବା କଲ୍ପନା ଦ୍ୱାରା ଶାଶ୍ୱତ ସତ୍ୟଙ୍କୁ ଉପଲବ୍ଧି କରିପାରିଲେ ହୃଦୟର କୋମଳ ବୃତ୍ତିରେ ଯେଉଁ କମ୍ପନ ସୃଷ୍ଟି ହେବ, ତାହା ହିଁ କବିତା ଆକାରରେ ପ୍ରକାଶ ପାଇବ । ତେଣୁ ପ୍ରେମିକ କବିର ଅନ୍ତର୍ନିହିତ କୋମଳ ଭାବକୁ ବୁଝି ତାକୁ ଭାଷାନ୍ତରରେ ପ୍ରକାଶ କରି ପୁଣି ସେହି ଭାବରେ ସହୃଦୟ ପାଠକଙ୍କୁ ଅଭିଭୂତ କରିବାରେ ଯେଉଁ ଶକ୍ତି, ତାହା ସେଇ ଅନୁବାଦକର ଥାଏ, ଯାହାର ଲେଖକ ହୃଦୟ ସହ ଗୁଣ ସାମ୍ୟ ଥାଏ । 'ରତିବିଳାପ'ର ସିଦ୍ଧହସ୍ତ ଅନୁବାଦକ, 'ତାଜମହଲ ଓ ଯମୁନା'ର ଖ୍ୟାତନାମା କବି ଶ୍ରୀଯୁକ୍ତ ସତ୍ୟାନନ୍ଦ ଚମ୍ପତିରାୟ ଶୃଂଗାର ରସାତ୍ମକ କବିତା ସୃଷ୍ଟିରେ ଓ ଅନ୍ୟ କବିଙ୍କ ସୃଷ୍ଟିକୁ ସୁରୁଚି ଶୈଳୀରେ ପ୍ରକାଶ କରିବାରେ ଅଭିଜ୍ଞ ଓ ପାରଂଗମ । ବର୍ତ୍ତମାନ ଅମରୁକକବିଙ୍କ ହୃଦୟାଭିବ୍ୟକ୍ତିପାଇଁ ତାଙ୍କର 'ପ୍ରୀତିଶତକ' ଭାରତୀୟ ଅନୁବାଦ ସାହିତ୍ୟରେ ଏକ ମହାର୍ଘ ସୃଷ୍ଟି । ଅମରୁକ କବିଙ୍କ ମୁକ୍ତକ ସଂକଳନ ଏହି 'ପ୍ରୀତିଶତକ'ର ପ୍ରତିଟି କବିତା ମଧ୍ୟ ସ୍ୱତନ୍ତ୍ର ଓ ନିରପେକ୍ଷ । କବିତାଗୁଡ଼ିକ ଛନ୍ଦୋମୟତା ମଧ୍ୟରେ ଅମରୁକଙ୍କ ଭାବପକ୍ଷ ଉଦ୍‌ଘାଟନରେ କିପରି ସଫଳ ହୋଇଛନ୍ତି, ତାହା ପ୍ରଦର୍ଶିତ ଉଦାହରଣରୁ ପ୍ରମାଣିତ ହେବ ।

❀ Poets are all who love, who feel great truths,
And tell them and the truth of truth is love.—Bailly.

କଳାପକ୍ଷ ଅପେକ୍ଷା ଭାବପକ୍ଷର ଉତ୍କର୍ଷତା ଅମରୁ କବିତାକୁ ଅମରତ୍ୱ ପ୍ରଦାନ କରିଛି । ଶୃଂଗାର ରସର ବିବିଧ ରସାଳ ଅଭିବ୍ୟଞ୍ଜନାକୁ ଉପସ୍ଥାପନ କରିବାକୁ ଯାଇ ନବୋଢ଼ା ମୁଗ୍ଧା ସହ ପ୍ରିୟର ହାସ ପରିହାସ, ଖଣ୍ଡିତା ପ୍ରୌଢ଼ାର ଧୃଷ୍ଟ ନାୟକ ପ୍ରତି ଭର୍ତ୍ସନା, ପ୍ରବତ୍ସ୍ୟତ ପତିକାର ବିଦେଶଗାମୀ ପତିଙ୍କ ପଥରୋଧନ, ଘନ-ଅନ୍ଧାରେ ଅଭିସାରିକାର କାଞ୍ଚୀ ଓ ନୂପୁର ନିକ୍ୱଣ—ଏସବୁ ଚିତ୍ର ଅମରୁକଙ୍କ 'ଏକାନ୍ତ ନିଜସ୍ୱ । କବିତାରେ ଜୟଦେବଙ୍କ ପରି କଳା-କୌଶଳ ପ୍ରଦର୍ଶନ ନ କରି ଏବଂ ଭର୍ତ୍ତୃହରିଙ୍କ ପରି ନୀତିବାଦର ଶୃଙ୍ଖଳାରେ ଆବଦ୍ଧ ନ ରହି ସେ ତାଙ୍କର ମୁକ୍ତକଗୁଡ଼ିକରେ ଗୋଟିଏ ଗୋଟିଏ ଭାବର ରସୋଚ୍ଛଳ ପ୍ରକାଶ ଅନୁରୂପ ଭାଷାରେ କରିଥିବାରୁ, ତାଙ୍କର ପ୍ରତ୍ୟେକ କବିତା ଅନେକ କୃତିର ଗୌରବ ବହନ କରି ଧନ୍ୟ (୧) ।

ନବବିବାହିତା ସହ ପ୍ରଥମ ସଂଗମ କରିବାକୁ ଯାଉଥିବା ପତିର ଯେଉଁ ବ୍ୟବହାର-ଚିତ୍ର ଅମରୁକଙ୍କ ଲେଖନୀରେ ସ୍ୱାଭାବିକ ଓ ଜୀବନ୍ତ ହୋଇଛି, ତାହା ଅତୀବ ଉଚ୍ଚକୋଟିର—

ପଟାଲଗ୍ନେ ପତ୍ୟୌ ନମୟତି ମୁଖଂ ଜାତବିନୟା
ହଠାଶ୍ଳେଷଂ ବାଞ୍ଛତ୍ୟପହରତି ଗାତ୍ରାଣି ନିଭୃତମ୍ ।
ନ ଶକ୍ନୋତ୍ୟାଖ୍ୟାତୁଂ ସ୍ମିତମୁଖସଖୀଦତ୍ତନୟନା
ହ୍ରିୟା ତାମ୍ୟତ୍ୟନ୍ତଃ ପ୍ରଥମପରିହାସେ ନବବଧୂଃ ॥

କବି ଚମ୍ପତିରାୟଙ୍କ ଅନୁବାଦ ହୋଇଛି—

ପ୍ରଥମ ନିଧୁବନ ସମୟେ,
ପତି ଟାଣିଲେ ବାସ, ନବୀନା ବଧୂ ଆଗୋ
ମୁଖକୁ ଘୋଡେ ମଥା ବିନୟେ ।
ବାହୁବଲୟେ ତୋଳି ନିବିଡ଼ ଆଶ୍ଳେଷ
ବିହିଲେ ପ୍ରିୟତମ ତାହାର ତନୁଦେଶ
ସେହି ତ କଉଶଳେ ରଭସେ,
ନିଜକୁ ନିର୍ଜନେ ଖସାଇ ନେଇ କେତେ
କହିବ କଥା ଭାବେ ହରଷେ ।
ହାସ୍ୟ ସେ କାଳେ ଦେଖି
ନିକଟେ ସ୍ମିତମୁଖୀ ସଖୀରେ,
ଦର୍ଶିତେ କଉତୁକ କଥା ନପାରି ଆଉ କହିରେ
ବିରହି ପାଏ ପୀଡ଼ା ହୃଦୟେ
ନବୀନା ବଧୂ ଆଗେ,
ପ୍ରଥମ ନିଧୁବନ ସମୟେ ।

(୧) 'ଅମରୁକକବେରେକଃ ଶ୍ଲୋକଃ ପ୍ରବନ୍ଧଶତାୟତେ'—ଟୀକାକାର ଭରତ

ଏଠାରେ ରସିକ ପାଠକ ହୃଦୟରେ ପତି ପତ୍ନୀଙ୍କ ପ୍ରଥମ ସଂଶ୍ଳେଷ-ଆରମ୍ଭର ଚନ୍ଦ ସହସା ଝଲସି ଉଠେ । ଏ ଦୃଶ୍ୟକୁ ଆଖିରେ ରଖି ଅନୁଭୂତରେ ନ ଆଣିଲେ, ମୂଳ ଭାବକୁ ଅକ୍ଷୁଣ୍ଣ ରଖି ଅନୁବାଦ କରିବା ସହଜ କଥା ନୁହେଁ । କବି ଚମ୍ପତିରାୟଙ୍କ ଅନୁବାଦ ଏ ଦୃଷ୍ଟିରୁ ଅତ୍ୟନ୍ତ ଉପଭୋଗ୍ୟ ଓ ସ୍ୱଭାବସୁଲଭ । ଏଠାରେ ମୁଗ୍‌ଧା ନାୟିକାର ବର୍ଣ୍ଣନା କଲାବେଳେ ମୁଖନମନାଦି ଅନୁଭାବଦ୍ୱାରା ନାୟିକାର ଯେଉଁ ସ୍ୱାଭାବିକ ବ୍ରୀଡ଼ାରୂପୀ ସତ୍ତ୍ୱଭାବ ମୂଳ ଶ୍ଳୋକରେ ପୁଷ୍ଟିଲାଭ କରି ସମ୍ଭୋଗଶୃଂଗାରକୁ ଅଭିବ୍ୟଞ୍ଜିତ କରୁଛି, ସେ ସମସ୍ତ ଓଡ଼ିଆ ଅନୁବାଦରେ ଅକ୍ଷୁଣ୍ଣ ରହିଛି ।

'କପଟ ନିଦ'ରେ ଶୋଇଥିବା ପ୍ରିୟତମ ନାୟିକାର ଚୁମ୍ବନରେ ପୁଲକିତ ହେବା ଦେଖି, ନାୟିକାର ଯେଉଁ ଲଜ୍ଜା ଓ ଅବସନ୍ନତା ଏବଂ 'ବାଗ୍‌ବନ୍ଧନ' ମୁକ୍ତକରେ ନବଦମ୍ପତିଙ୍କ କେଳି କଥା ପ୍ରକାଶ କରିଦେବାରୁ ନବବଧୂର ଯେଉଁ ଗ୍ଲାନି ଓ ସମ୍ଭ୍ରମ—ତାରି ଚିତ୍ରରୁ କବିଙ୍କ ରସିକତା ପ୍ରମାଣିତ ହୁଏ ! 'ପ୍ରିୟର ପ୍ରସ୍ଥାନ'ରେ ଯେଉଁ ଅପୂର୍ବ ଗୁରୁତ୍ୱ ଓ ରସିକତା, ତାହା ତାଙ୍କର ରସିକପ୍ରାଣର ମଞ୍ଜୁଳ ଅଭିବ୍ୟକ୍ତି । 'ବୃଥା ସଙ୍କଳ୍ପ' ଓ 'ମାନଭଞ୍ଜନ' ମୁକ୍ତକରେ ପ୍ରଣୟୀର ଉପସ୍ଥିତିରେ ପ୍ରଣୟିନୀର ମାନ କପଟ ବ୍ୟର୍ଥ ଓ ସ୍ୱତଃଭଂଗ ହୁଏ, ତାର ବର୍ଣ୍ଣନାରେ ଅଦ୍ଭୁତ ଚମତ୍କାରିତା ରହିଛି । ମାନିନୀ ନାୟିକାର ଅଭିମାନଭଙ୍ଗ ଉତ୍ତରରେ ଯେଉଁ କରୁଣତାର ପୂର୍ଣ୍ଣ, ତାହା କବି ଚମ୍ପତିରାୟଙ୍କ ଅନୁବାଦରେ ମଧ୍ୟ ଅତୀବ ମର୍ମସ୍ପର୍ଶୀ ଓ ଜୀବନ୍ତ ହୋଇ ମୂଳଭାବକୁ ଅକ୍ଷୁଣ୍ଣ ଭାବରେ ଅଭିବ୍ୟଞ୍ଜିତ କରୁଛି । କବିତାଟି ହେଲା—

କୋପନା ବାଳାରେ କହିଲେ ବଲ୍ଲଭ—
'ତୁ ଛାଡ଼ ମାନ ତୋର ମନନ',
ମାନିନୀ କହେ—'ନାଥ ! ମୁଁ କଲେ ମାନ ଅବା
ତୁମର କିସ ଯାଏ କହନ ?'
'ତୁମେ କି ବୁଝ ନାହିଁ ମରମେ ଜାଗେ ଖେଦ'
—କହିଲେ ପ୍ରିୟତମ ବୁଝାଇ,…
ତରୁଣୀ ଉତ୍ତରେ—'ତମର ଦୋଷ ନାହିଁ
ମୋ ଦୋଷେ ତବ ଖେଦ କିପାଇଁ ?
'ତେବେ କି ଲାଗି ସହି କାନ୍ଦୁ ତୁହାଇ ତୁ'
—ଦୟିତ ପଚାରିଲେ ସରାଗେ,
ନାୟିକା କହେ—'କହ, କାନ୍ଦେ କା ଆଗେ ମୁଁ ?'
କହିଲେ ପତି—'ଏଇ ମୋ ଆଗେ' ।
ପଚାରେ ମାନମୟୀ—'ତୁମର କିଏ ମୁହିଁ ?'
କହିଲେ ପ୍ରିୟ—'ତୁମେ ପ୍ରିୟା ଗୋ'
ମାନିନୀ କହେ—'ପ୍ରିୟା ନୁହଇଁ ବୋଲି ପିନା
କାନ୍ଦେ ଜାଣୁ ନାହଁ କିଆଁ ଗୋ ! ?'

ଏହି 'ମାନିନୀର ଉତ୍ତର' ଯେଉଁପରି ଅନୁରୂପ ସାବଲୀଳ ଭଙ୍ଗୀରେ ନାଟକୀୟ ପରି-ପ୍ରକାଶ ଲାଭ କରିଛି, ତାହା କବିକୃତିର ଅପୂର୍ବ ସଫଳତା ପ୍ରତିପାଦନ କରେ ।

ଅମରୁକଙ୍କ ମୁକ୍ତକଗୁଡ଼ିକରେ ପ୍ରେମିକ ପ୍ରେମିକାଙ୍କର ଯେଉଁପରି ମାନସିକ ବିଶ୍ଳେଷଣ ରସୋତ୍ତୀର୍ଣ୍ଣ ଭଙ୍ଗୀରେ ହୋଇଛି, ତାହା କାବ୍ୟ ଜଗତରେ ଅତୁଳନୀୟ । କବିଙ୍କ ନାୟିକା ନିର୍ଭର ଭାବରେ ବିଶ୍ୱସ୍ତା । ଯାହା କିଛି ଅସ୍ଥିରତା, ଦୋଷ ଦୁର୍ବଳତା ସବୁ ନାୟକଠାରେ ହିଁ କବି ଲକ୍ଷ୍ୟକରି ତାଙ୍କ ନାୟିକାକୁ ଦୋଷମୁକ୍ତା କରିଛନ୍ତି । ତେଣୁ ନାୟକର ଅପରାଧରେ ନାୟିକାଠାରେ ମାନ, ରୋଷ ପ୍ରଭୃତି ଦେଇ ନାୟିକାର ପ୍ରେମ ପ୍ରକର୍ଷ ପ୍ରକଟନ କରିଛନ୍ତି ।

ଶାସ୍ତ୍ରୀୟ ଦୃଷ୍ଟିକୋଣରୁ କବିତାଗୁଡ଼ିକର ରସସୃଷ୍ଟିକୁ ବିବେଚନା କଲେ, ଏ ସମସ୍ତ ଶୃଙ୍ଗାର ରସର ବିପ୍ରଲମ୍ଭ ଓ ସଂଭୋଗ ଭେଦ ଦ୍ୱୟର ଅନ୍ତର୍ଗତ । ଏଥିରୁ 'ଅନୁରାଗର ପ୍ରଗାଢ଼ତା ମଧ୍ୟରେ ମିଳନର ଆକାଙ୍କ୍ଷା ନେଇ ନାୟକ ନାୟିକାଙ୍କ ଯେଉଁ ଅନ୍ତର୍ଦାହ, ତାହା ହିଁ ବିପ୍ରଲମ୍ଭ ଶୃଙ୍ଗାର' (୧) ଏବଂ ଏଥିରେ ପ୍ରଣୟ ଆବେଗର ସ୍ପଷ୍ଟତା ଓ କ୍ଷିପ୍ରତା ଥିବାରୁ 'ନ ବିନା ବିପ୍ରଲମ୍ଭେନ ଶୃଙ୍ଗାରଃ ପୁଷ୍ଟିମଶ୍ନୁତେ' କହି ଆଦିରସ ସୃଷ୍ଟିରେ ଏହାର ଉପଯୋଗିତା ସର୍ବସମ୍ମତ । ଭରତମୁନିଙ୍କ ନାଟ୍ୟଶାସ୍ତ୍ରରେ ଏହାର କୌଣସି ପ୍ରକାରଭେଦ କରାଯାଇ ନ ଥିଲେ ସୁଦ୍ଧା ଭୋଜରାଜ ସର୍ବପ୍ରଥମେ ଶୃଙ୍ଗାର ପ୍ରକାଶରେ ଏହାର ଭେଦ କଳ୍ପନା କରିଛନ୍ତି । ଏହାପରେ ଧନଞ୍ଜୟ ଶୃଙ୍ଗାରର ଭେଦତ୍ରୟ ସ୍ୱୀକାର କରି ମିଳନ-ପୂର୍ବ ଅବସ୍ଥାକୁ 'ଅଯୋଗ' ନାମରେ ଅଭିହିତ କରିଥିଲେ । ପରବର୍ତ୍ତୀ କାଳରେ ଆଚାର୍ଯ୍ୟଗଣ ବିପ୍ରଲମ୍ଭର ଭେଦକୁ ନେଇ ଦୁଇ ପ୍ରକାର ମତ ପ୍ରତିଷ୍ଠା କରିଗଲେ । ପ୍ରଥମ ମତବାଦୀ ପୂର୍ବରାଗ, ମାନ, ପ୍ରବାସ ଓ କରୁଣ ଭେଦରେ ବିପ୍ରଲମ୍ଭକୁ ଚାରିଭାଗରେ ବିଭକ୍ତ କରିବାବେଳେ; ଦ୍ୱିତୀୟ ମତବାଦୀଗଣ ଅଭିଲାଷ, ଈର୍ଷା, ବିରହ, ପ୍ରବାସ ଓ କରୁଣ ଭେଦରେ ବିପ୍ରଲମ୍ଭର ପାଞ୍ଚ ପ୍ରକାର ଭେଦ କଳ୍ପନା କରନ୍ତି । ପଣ୍ଡିତରାଜ ଜଗନ୍ନାଥ କିନ୍ତୁ ଏହି ଭେଦକଳ୍ପନାରେ କୌଣସି ଅନ୍ତର ଥିବା ସ୍ୱୀକାର କରନ୍ତି ନାହିଁ (୨) । କିନ୍ତୁ ବିଶେଷ ଅନ୍ତର ନ ଥିଲେ ସୁଦ୍ଧା ଏଥିରେ ମନୋଦଶାଗତ ସନ୍ନିକୃଷ୍ଟ ପାର୍ଥକ୍ୟ ଥିବା ଅନୁଭୂତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ-ପ୍ରବାସଜନ୍ୟ ବିପ୍ରଲମ୍ଭରେ ସନ୍ତାପର ଆଧିକ୍ୟ ଥିବାବେଳେ, ଈର୍ଷ୍ୟାଜନ୍ୟ ବିପ୍ରଲମ୍ଭରେ ରୋଷମିଶ୍ରିତ ବିଷାଦର ତୀବ୍ରତା ପରିଲକ୍ଷିତ ହୁଏ । ତେଣୁ ବିଶ୍ୱନାଥ କବିରାଜ ପୂର୍ବରାଗ, ମାନ, ପ୍ରବାସ ଓ କରୁଣ ଭେଦରେ ବିପ୍ରଲମ୍ଭ ଚାରିପ୍ରକାର ବୋଲି କହିଛନ୍ତି (୩) ।

---

(୧) ଯତ୍ର ତୁ ରତିଃ ପ୍ରକୃଷ୍ଟା ନାଭୀଷ୍ଟମୁପୈତି ବିପ୍ରଲମ୍ଭୋଽସୌ
(—ସାହିତ୍ୟଦର୍ପଣ, ୩ୟ ପରିଚ୍ଛେଦ)

(୨) ଇମଂ ଚ ପଞ୍ଚବିଧଂ ପ୍ରାଞ୍ଚଃ ପ୍ରବାସାଦିଭିରୁପାଧିଭିରାମନନ୍ତି । ତେ ଚ ପ୍ରବାସାଭିଲାଷ-ବିରହେର୍ଷ୍ୟାଶାପାନାଂ ବିଶେଷାନୁପଲମ୍ଭାନ୍ନାଦ୍ରିୟନ୍ତେ ପ୍ରପଞ୍ଚିତାଃ । (-ରସଗଙ୍ଗାଧର)

(୩) ସ ଚ ପୂର୍ବରାଗମାନପ୍ରବାସକରୁଣାତ୍ମକଶ୍ଚତୁର୍ଦ୍ଧା ସ୍ୟାତ୍—
(ଇତି ସାହିତ୍ୟଦର୍ପଣଃ ୩ୟ ପରିଚ୍ଛେଦଃ)

ପୂର୍ବରାଗରେ ଉତ୍କଣ୍ଠ ଔତ୍ସୁକ୍ୟ ପରିଲକ୍ଷିତ ହୋଇଥାଏ । ପ୍ରିୟତମ ସାନ୍ନିଧ୍ୟର ସୁଖ ଅନୁଭବ ନ ଥିବା ହେତୁ, ଏଥିରେ ତା'ର ଅଭାବର ମାତ୍ର ଅନୁଭୂତ ନ ଥିଲେ ସୁଦ୍ଧା ଶ୍ରବଣ ଦର୍ଶନ ହେତୁକ ଅନୁରକ୍ତ ଥାଏ । ପ୍ରୀତିଶତକର 'ପ୍ରେମିକାନେତ୍ର' ଓ 'ପ୍ରୀତିପଥ' ପ୍ରଭୃତି କେତୋଟି କବିତା ଏହି ପୂର୍ବରାଗ ବିପ୍ରଲମ୍ଭର ଉଦାହରଣ ।

ମାନବିପ୍ରଲମ୍ଭ ପ୍ରଣୟଜ ଓ ଈର୍ଷ୍ୟାସମ୍ଭବ ଭେଦରେ ଦ୍ୱିବିଧ (୧) । ପ୍ରଣୟମାନ ଅକାରଣ କୋପହେତୁକ ହୋଇଥାଏ, ତେଣୁ ଅଧିକ ସମୟ ରହେ ନାହିଁ କିନ୍ତୁ ଈର୍ଷ୍ୟାମାନ ପ୍ରିୟତମଙ୍କ ଅନ୍ୟ ରମଣୀ ଆସକ୍ତ ହେତୁକ ହୋଇଥାଏ ଏବଂ ଏହା ସ୍ୱୋପମିଶ୍ରିତ ହେତୁ ଅଧିକ କାଳ ରହେ । ପ୍ରୀତିଶତକର 'ବୃଥାସଙ୍କଳ୍ପ', 'ଅପାଂଗମିଳନ', 'କୋପଭ୍ରିୟା', 'ଲଳାଠାମନ', 'ପ୍ରଣୟବର୍ଦ୍ଧମାନ', 'ପ୍ରେମର ପରିଣତି' ପ୍ରଭୃତିକୁ ପ୍ରଣୟ-ମାନବିପ୍ରଲମ୍ଭର ଉଦାହରଣ ଭାବରେ ଏବଂ 'ବିସ୍ମୃତା', 'ଚତୁରାର ଗୃହବୃତ୍ତି', 'ଦୁଃଖ ମୋହର ପଥ', 'କୋପଗୋପନ' ପ୍ରଭୃତିକୁ ଈର୍ଷ୍ୟାମାନ (୨) ଭିତରେ ଗ୍ରହଣ କରାଯାଇପାରେ ।

କୌଣସି କାର୍ଯ୍ୟବଶତଃ ପ୍ରିୟତମଙ୍କ ଦେଶାନ୍ତର ଗମନରେ ପ୍ରିୟାର ହୃଦୟରେ ଯେଉଁ ସନ୍ତାପମୟୀ ବୃତ୍ତି ଜାଗରିତ ହୁଏ, ତାହା ହେଉଛି ପ୍ରବାସ ବିପ୍ରଲମ୍ଭ । ପ୍ରୀତିଶତକର 'କାନ୍ତ ପ୍ରବାସ କାଳେ', 'ସ୍ୱଗତୋକ୍ତି', 'ଲୋତକ ବନ୍ୟାରେ', 'ଅସୀମଦୂରେ', 'ବିଦେଶଗମନକାଳେ', 'ଔତ୍ସୁକ୍ୟ' କବିତାରେ ପ୍ରବାସବିପ୍ରଲମ୍ଭ ଶୃଂଗାର ବର୍ଣ୍ଣିତ ।

କରୁଣବିପ୍ରଲମ୍ଭ ଶୃଂଗାର ବସ୍ତୁତଃ କରୁଣରସ କିନ୍ତୁ ଶୃଂଗାର ଭେଦ ନୁହେ (୩)— ବୋଲି ଦଶରୂପକକାର ଧନଞ୍ଜୟ ପ୍ରଭୃତିଙ୍କ ମତ । ଅମରୁ କୃତିରେ ତେଣୁ କରୁଣ ବିପ୍ରଲମ୍ଭର ବର୍ଣ୍ଣନା ନାହିଁ ।

---

(୧) 'ମାନଃ କୋପଃ ସ ତୁ ଦ୍ୱେଧା ପ୍ରଣୟେର୍ଷ୍ୟାସମୁଦ୍ଭବଃ'

—ସାହିତ୍ୟଦର୍ପଣ, ତୃତୀୟପରିଚ୍ଛେଦ

(୨) ପ୍ରୀତିଶତକର ୨୯, ୩୨, ୩୩, ୩୪, ୩୭, ୪୧, ୪୨, ୫୭, ୬୮, ୭୯, ୭୦, ୭୧, ୮୨, ୮୩, ୮୭, ୮୮, ୯୦, ୯୨, ୯୪, ୯୫, ଓ ୯୯ ସଂଖ୍ୟକ କବିତା ମଧ୍ୟ ଈର୍ଷ୍ୟାମାନ ବିପ୍ରଲମ୍ଭଭେଦର ଅନ୍ତର୍ଗତ ।

(୩) "ମୃତେ ତ୍ୱେକତ୍ର ଯତ୍ରାନ୍ୟଃ ପ୍ରଲପେଚ୍ଛୋକ ଏବ ସଃ । ବ୍ୟାଶ୍ରୟତ୍ୱାନ୍ନ ଶୃଂଗାରଃ ॥"

(ଦଶରୂପକମ୍, ୪ର୍ଥ ପ୍ରକାଶଃ)

ଶୃଂଗାରର ଅନ୍ୟତମ ଭେଦ ସମ୍ଭୋଗ ଶୃଂଗାରରେ ପ୍ରେମିକ ପ୍ରେମିକାଙ୍କ ଦର୍ଶନସ୍ପର୍ଶନାଦିର ଅନୁଭୂତି ବର୍ଣ୍ଣିତ ହୋଇଥାଏ (୧) । ଚୁମ୍ବନ, ଆଲିଂଗନ ଆଦି ସୁଖଭୋଗର ଅସୀମ ଭେଦକୁ ନେଇ ଏହାର ଅସଂଖ୍ୟ ବିଭାଗ ହୋଇପାରେ । ପ୍ରୀତିଶତକରେ 'ମାଂଗଳିକୀ', 'କପଟକେଳି', 'ସରମେ ମରେ', 'ପ୍ରୀତିପ୍ରଚ୍ଛଦ', 'ସୁରତାରମ୍ଭେ', ଦକ୍ଷିଣନାୟିକା', 'ଶଠସାଥି', 'ପ୍ରୀତିଦଂଶିତା', 'ପ୍ରଥମ ନିଧୁବନ ସମସ୍ୟେ', 'ଅମୃତସନ୍ଧାନ' ପ୍ରଭୃତି (୨) କବିତାରେ ସମ୍ଭୋଗଶୃଂଗାରର ବର୍ଣ୍ଣନା ଦେଖିବାକୁ ମିଳେ ।

ଏହା ବ୍ୟତୀତ ଅଭିସାରିକା, ପ୍ରୋଷିତଭର୍ତ୍ତୃକା ପ୍ରଭୃତି କବିତାରେ ଯେପରି ନାୟିକା ଭେଦର ରୂପାୟନ ହୋଇଛି, ସେହିପରି 'ଧୀରେ କହି ଶୁଣିବେ', 'ତରକାହାକୁ', 'ବାଟସକଥା' ପ୍ରଭୃତି କବିତାରେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଭାବ ରୂପପରିଗ୍ରହ କରିଛି । ଉଦ୍ଦୀପନ ବିଭାବ ଅନ୍ତର୍ଗତ ପ୍ରକୃତି ବର୍ଣ୍ଣନା କବିଙ୍କ 'ମଧୁମଞ୍ଜୁ' ପରି କେତୋଟି କବିତାରେ ହୋଇଛି ।

କବି ମୁଖ୍ୟତଃ ଶୃଂଗାରୀ । ତେଣୁ ହିଁ କବିବର ଅମରୁକଙ୍କ କବିତ୍ୱର ଡମ୍ବରୁ ନିନାଦରେ ଅନ୍ୟ ଶୃଂଗାରରସ ଭଣିତି ସବୁ ଆତ୍ମଗୋପନ କରି ସହୃଦୟଙ୍କ କର୍ଣ୍ଣକୁହରରେ ପ୍ରବେଶ କରିପାରନ୍ତି ନାହିଁ—ବୋଲି ଅମରୁଶତକର ପ୍ରସିଦ୍ଧ ଟୀକାକାର ଅର୍ଜ୍ଜୁନବର୍ମା ଦେବ କହିଥିଲେ (୩) । ବାସ୍ତବିକ ଶୃଂଗାରଭାବକୁ କଳ୍ପନାର ପୁଟ ଦେଇ ପ୍ରେମିକ ପ୍ରେମିକାଙ୍କ ଅନେକ ଭାବ ବିଭବକୁ ଗଭୀର ଓ ତୀବ୍ର ଭାବରେ ପାଠକମାନଙ୍କ ହୃଦୟସ୍ପର୍ଶୀ କଲାପରି ମୁକ୍ତକ ରଚନା କରିବାଦ୍ୱାରା ଏକ ନୂତନ ବିକାଶଶୀଳ ମନୋବୃତ୍ତିର ପରିଚୟ ଦେବା ସଙ୍ଗେ ସଙ୍ଗେ କବିବର ଅମରୁ ଶୃଂଗାର ରସାତ୍ମକ ସାହିତ୍ୟ ସୃଷ୍ଟି କରିବାରେ ଜଣେ ପଥପ୍ରଦର୍ଶକ ଅଗ୍ରଦୂତ । ପ୍ରେମିକ ଜୀବନର କେତେକ ବାସ୍ତବ ସତ୍ୟ ପ୍ରକାଶରେ କବି ପ୍ରାଣର ଅନୁଭୂତି-ସାନ୍ଦ୍ରତା ମଧ୍ୟ କେମନ୍ତ କେତେକ ପଂକ୍ତିରୁ ଅନୁମାନ କରାଯାଇ ପାରେ—

ସମ୍ମୁଖେ ମୋର ଅସି ହୋଇଗଲେ ଉଭା
ହୃଦୟେ ଲୋ ମାନ କେମନ ପାରିବ ରହି !
(—ବୃଥା ସଙ୍କଳ୍ପ)

---

(୧) 'ଦର୍ଶନସ୍ପର୍ଶନାଦୀନି ନିଷେବେତେ ବିଳାସିନୌ,
ଯତ୍ରାନୁରକ୍ତାବନ୍ୟୋନ୍ୟଂ ସମ୍ଭୋଗୋଽୟମୁଦାହୃତଃ ।'
(ସାହିତ୍ୟ ଦର୍ପଣଃ ତୃତୀୟ ପରିଚ୍ଛେଦଃ)

(୨) ପ୍ରୀତିଶତକର ୪୮, ୫୫, ୫୭, ୫୯, ୬୧, ୬୨, ୬୩, ୬୭, ୮୧, ୮୭, ୯୭, ସଂଖ୍ୟକ କବିତା ମଧ୍ୟ ସମ୍ଭୋଗ ଶୃଂଗାରର ଉଦାହରଣ ।

(୩) ଅମରୁକକବିତ୍ୱଡମରୁକନାଦେନ ବିନିହ୍ନୁତା ନ ସଞ୍ଚରତି ।
ଶୃଂଗାରଭଣିତିରନ୍ୟା ଧନ୍ୟାନାଂ ଶ୍ରବଣକୁହରେଷୁ ॥

ନାବିକରେ !

ତୋର ଯିବା ତ ମୃତ୍ୟୁ
ଛାଡ଼ି ତେବେ କାହିଁ
ସୁନ୍ଦର ଗମନ ବ୍ୟର୍ଥ ?

(—ହ୍ୱିଟେତ୍ର)

ଜାଣିନ ପାରୁନ୍ତୁ ଚପଳା ସ୍ତ୍ରୀ ମାନେ
ପୁରୁଷ ପାଦ୍ରେ ହାତ,
ତୁମି ନିଜ ସ୍ନେହ ନାରୀ ମମତା
ଅଛ ତ ଏ ପରମାଦ ।

(—ଅସ୍ତ୍ରୁକ୍ୟ)

ଏହା ଛଡ଼ା ରମଣୀର ଶୋଭା ବର୍ଣ୍ଣନାରେ କବି ଭାବକୁ ମଞ୍ଜୁଳ ଭାଷାରେ ଫୁଟାଇ ସମଧିକ ରମଣୀୟ କରିବାରେ ଶ୍ରୀଯୁକ୍ତ ମହାପାତ୍ରଙ୍କ ଅନୂଦିତ 'ବଳାକାଗୁଚ୍ଛ'ର ଗୋଟିଏ ପଂକ୍ତିରୁ ଉପଲବ୍ଧି କରିହେବ—

ହୀନ ନର୍ମଳ— କାହେ ଉଜ୍ଜ୍ୱଳତା ଅନେକାନ୍ତ ଶୋଭାଏ
ବର୍ଣ୍ଣନ୍ତ ରମଣୀୟା,
ଘୋର ନିଶ୍ଚଳ— ନାଲେ ଧରାଧରେ ଯେତେ ନ ସହ୍ୟ
ଆସେ ହୋଇ ବରଣୀୟା ।

କବି ମହାପାତ୍ରଙ୍କ ଏହି ଅନୁବାଦ 'ପ୍ରତିବେଦନ' ଓଡ଼ିଆ ସାହିତ୍ୟରେ କେବଳ ଯେ ଅନୁବାଦର ଆଦର୍ଶ ହେବ ତାହା ନୁହେଁ, ମୂଳର ଗୀତକବିତାର ଏକ ସମୃଦ୍ଧ ସମ୍ପଦ ଭାବରେ ବିବେଚିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ଗୀତ ସାହିତ୍ୟ ଉପରେ ଅମରୁ ଶତକର ଅଖଣ୍ଡ ପ୍ରଭାବ ଓ ପ୍ରତିଷ୍ଠାକୁ ମଧ୍ୟ ପ୍ରକାଶ କରିବାରେ ସହାୟକ ହେବ ।

**ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ**
ସମ୍ପାଦକ
ସାଂସ୍କୃତିକ ବ୍ୟାପାର ବିଭାଗ
ଓଡ଼ିଶା, ଭୁବନେଶ୍ୱର-୭
ତା ୧୬ । ୯ । ୭୯



"କଳାଃ କିୟନ୍ତ୍ୟୋ ବଦ ପୁଷ୍ପଧନ୍ୱନଃ
କିମାତ୍ମିକାଃ କିଂ ଚ ପଦଂ ସମାଶ୍ରିତାଃ
ପୂର୍ବେ ଚ ପକ୍ଷେ କଥମନ୍ୟଥା ସ୍ଥିତିଃ
କଥଂ ଯୁବତ୍ୟାଂ କଥମେବ ପୁରୁଷେ ॥"

"ରତିର ଲକ୍ଷଣ କ'ଣ ? କାମ କଳା କେତେ ପ୍ରକାର ? ଶରୀରର କେଉଁ ଅଂଶରେ କାମ ଅବସ୍ଥାନ କରେ ଏବଂ କେଉଁ କ୍ରିୟାରେ ତାହାର ଆବିର୍ଭାବ ହୁଏ ? ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷରେ ପୁରୁଷ ଓ ନାରୀର ଦେହରେ କାମର ହ୍ରାସ ବୃଦ୍ଧି କେଉଁ ପରି ହୁଏ ? ଆଉ ପୁରୁଷ ଉପରେ ନାରୀ କେଉଁ ପ୍ରକାରେ କାମକଳା ବିସ୍ତାର କରେ ?"

ଉଭୟ ଭାରତୀଙ୍କର ଏଇ ସବୁ ପ୍ରଶ୍ନରେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ତଳକୁ ମୁହଁ ପୋତିଲେ । ପଚାରିଲେ, "ଦେବି, ସନ୍ନ୍ୟାସୀ ମୁଁ । ଶାସ୍ତ୍ରୀୟ ପ୍ରଶ୍ନ କର, ମୁଁ ତାର ଉତ୍ତର ଦେବି !"

"କାମଶାସ୍ତ୍ର କଣ ଶାସ୍ତ୍ର ନୁହେଁ ? କାମଶାସ୍ତ୍ର ଆଲୋଚନାରେ ଯଦି ତମ୍ଭ ହେବାର ଘଟେ ତେବେ ଆପଣ ତତ୍ତ୍ୱଜ୍ଞାନୀ ହେଲେ ବା କିପରି ?" ଉଭୟ ଭାରତୀ ଦୃପ୍ତ କଣ୍ଠରେ ପଚାରିଲେ ।

ଜଗଦ୍ଗୁରୁ ଦିଗ୍ବିଜୟୀ ଶଙ୍କର କରିବେ କଣ ? ସ୍ୱାମୀ ମଣ୍ଡନଙ୍କୁ ପରାଜିତ କରିବା ପରେ ତାଙ୍କର ଅର୍ଦ୍ଧାଙ୍ଗିନୀ ଉଭୟ ଭାରତୀଙ୍କ ନିକଟରେ ଏବେ ପରାଜୟ ସ୍ୱୀକାର କରିବାକୁ ପଡ଼ୁଛି । ଅଗତ୍ୟା ଅଳ୍ପ ହସି ଶଙ୍କର କହିଲେ, "ମା, ତମ ପ୍ରଶ୍ନର ଉତ୍ତର ଦେବା ଲାଗି ମୁଁ ତମଠାରୁ ଏକ ମାସ ସମୟ ମାଗି ନେଉଛି । ମୁଁ ସନ୍ୟାସୀ । ମୋ ମୁହଁରେ ଏ ସବୁ ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ । ତେଣୁ ଦେହାନ୍ତରେ ପ୍ରବେଶ କରି ତୁମ ପ୍ରଶ୍ନର ଲିଖିତ ଉତ୍ତର ଦେବି ।"

"ତାହା ହିଁ ହେଉ"—ସମ୍ମତି ଜଣାଇଲେ ଉଭୟଭାରତୀ ।

× × ×

ମାହିଷ୍ମତୀ ନଗରୀ ପରିତ୍ୟାଗ କରି ଚିନ୍ତାକୁଳ ହୋଇ ଫେରୁଥିଲେ ଜଗଦ୍ଗୁରୁ ଶଙ୍କରାଚାର୍ଯ୍ୟ ନିଜର ଶିଷ୍ୟବର୍ଗଙ୍କ ସହ । ଜନମାନବ ଶୂନ୍ୟ ଏକ ନିବିଡ଼ ବନାନୀ । ବହୁପଥ ଅତିକ୍ରମ କଲା ପରେ ଶୁଭିଲା ଏକ ଦାରୁଣ କୋଳାହଳ । ନିକଟକୁ ଯାଇ ସମସ୍ତ ବୃତ୍ତାନ୍ତ ଜାଣିଲେ—ଜଣେ ରଜା ମୃଗୟାକୁ ଆସି ଅକସ୍ମାତ୍ ମରି ଶୋଇଛନ୍ତି । ମନ୍ତ୍ରୀ ଓ ମହିଷୀମାନେ ଶବକୁ ଘେରି ବନସ୍ଥଳୀକୁ କରୁଣାପ୍ଳାବିତ କରୁଛନ୍ତି । ଶଙ୍କର ଦେଖିଲେ ଏହା ଏକ ସୁବର୍ଣ୍ଣ ସୁଯୋଗ । ଶିଷ୍ୟ ପଦ୍ମପାଦଙ୍କୁ କହିଲେ, "ପଦ୍ମପାଦ, ମୁଁ ଏଇ ରଜାଙ୍କ ମୃତ ଦେହ ମଧ୍ୟରେ ପ୍ରବେଶ କରୁଛି । ତୁମେ ମୋର ଶରୀରକୁ ଏକ ନିରାପଦ ଗୁହା ଭିତରେ ରଖି ରହିଥାଅ । ମୁଁ ପୁଣି ଏକ ମାସ ପରେ ମୋ' ଶରୀରକୁ ଫେରି ଆସିବି ।"

ରାଜା ଅମରୁକଙ୍କ ମୃତ ଦେହ ଭିତରେ ଜଗଦ୍ଗୁରୁ ଶଙ୍କର ପ୍ରବେଶ କଲେ । ସେଠାରୁ ରାଜନଅରକୁ ଫେରି ତାଙ୍କର ଶତପତ୍ନୀଙ୍କ ସହ ମିଶି କାମକଳାରେ ସମ୍ୟକ୍ ବ୍ୟୁତ୍ପତ୍ତି ଅର୍ଜନ କଲେ । ଉଭୟ ଭାରତୀଙ୍କର କାମକଳା ସମ୍ବନ୍ଧୀୟ ପ୍ରଶ୍ନାବଳୀର ଉତ୍ତର ସ୍ୱରୂପ ଏକ ପ୍ରାମାଣିକ ଗ୍ରନ୍ଥ ରଚନା କରି ତାହାକୁ ଗୋପନରେ ପଦ୍ମପାଦଙ୍କ ହସ୍ତରେ ଦେଲେ । ଏକ ମାସ ପରେ···ତାଙ୍କର ସ୍ୱଦେହକୁ ପ୍ରତ୍ୟାବର୍ତ୍ତନ କରି ଉଭୟ ଭାରତୀଙ୍କ ପ୍ରଶ୍ନର ଉତ୍ତର ଦେଇଥିଲେ ।

ରାଜା ଅମରୁକଙ୍କ ଶରୀରରେ ଥାଇ ଆଚାର୍ଯ୍ୟ ଶଙ୍କରଙ୍କ ପ୍ରଣୀତ ସେହି କୃତୀ ଅମରୁଶତକ ଆଜି ଭାରି ଶୃଙ୍ଗାର ରସାତ୍ମକତା ନେଇ ପୃଥିବୀ ପ୍ରସିଦ୍ଧ ।

ଅଷ୍ଟମ ଶତାବ୍ଦୀର ଏହି ଗ୍ରନ୍ଥଟି କେବଳ ଭାରତ ବର୍ଷରେ ନୁହେଁ—ୟୁରୋପର ଜର୍ମାନୀ, ଫ୍ରାନ୍ସ, ଇଂଲଣ୍ଡ ଓ ଆମେରିକା ପ୍ରଭୃତି ବହୁ ଦେଶରେ ବେଶ୍ ଲୋକପ୍ରିୟତା ଅର୍ଜନ କରିପାରିଅଛି । ଏହାର ଦାକ୍ଷିଣାତ୍ୟ ସଂସ୍କରଣ (ବେମଭୂପାଳଙ୍କ ଶୃଙ୍ଗାର ଦୀପିକା ଟୀକା), ବଙ୍ଗ ସଂସ୍କରଣ (ରବିଚନ୍ଦ୍ର କୃତ ଟୀକା), ପଶ୍ଚିମୀ ସଂସ୍କରଣ (ଅର୍ଜୁନ ବର୍ମ ଦେବକୃତ ରସିକ ସଞ୍ଜୀବନୀ ଟୀକା) ଓ ମିଶ୍ର ସଂସ୍କରଣ (ରାମରୁଦ୍ର ଓ ରୁଦ୍ରମ ଦେବକୃତ ଟୀକା) ତଥା ବିଦେଶୀ ସଂସ୍କରଣ ସବୁ ମିଳାଇ ଦେଖିଲେ ଅମରୁକଙ୍କ ୫୧ଟି ମାତ୍ର ଶ୍ଲୋକ ନିଜର ବୋଲି ପ୍ରମାଣ ମିଳୁଛି । ଏହି ୫୧ଟି ଶ୍ଲୋକକୁ ଛାଡ଼ିଦେଲେ ଆହୁରି ୯୧ରୁ ୧୧୫ ଯାଏଁ ଅଧିକ ଶ୍ଲୋକ ପ୍ରକ୍ଷିପ୍ତ ଆକାରରେ ଅମରୁକଙ୍କ ନାମରେ ଚଳୁଛି । ଏଥିମଧ୍ୟରୁ କେତେକ ଶ୍ଲୋକ ଅନ୍ୟ କବିଙ୍କର ବୋଲି ମଧ୍ୟ ବିଭିନ୍ନ ଗ୍ରନ୍ଥରୁ ପ୍ରମାଣ ମିଳୁଛି । ଯେ ଯାହାହେଉ, ଅମରୁଶତକ କେତେକ ମୁକ୍ତକ କବିତାର ଏକ ସଙ୍କଳନ ମାତ୍ର ଏବଂ ଏହାର ବିଭିନ୍ନ ସଂସ୍କରଣରେ ଶ୍ଲୋକମାନଙ୍କର ସଂଖ୍ୟା ଓ କ୍ରମ ନେଇ ଭିନ୍ନତା ରହିଛି । ଅତଏବ ଅମରୁକଙ୍କ ନାମରେ ଚଳୁଥିବା ସମସ୍ତ ଶ୍ଲୋକ ମଧ୍ୟରୁ ମାତ୍ର ଶହେଟିର ଅନୁବାଦ "ପ୍ରୀତିଶତକ"ରେ ସ୍ଥାନପାଇଛି ।

\+ \+ \+

୧୯୬୧ ମସିହା କଥା । ସେତେବେଳେ ରାଜନୀତିର ଆବର୍ତ୍ତରେ କ୍ଷତ ବିକ୍ଷତ ହୋଇ ମୁଁ କଟକର ବଖ୍ରାବାଦରେ ମସୀଚର୍ଯ୍ୟା କରୁଥାଏ, ଓଡ଼ିଶାର ସ୍ୱନାମଧନ୍ୟ ପତ୍ରିକା ଝଙ୍କାରର ସମ୍ପାଦକ ଭାବରେ । ଓଡ଼ିଶା ଷ୍ଟେଟ ମ୍ୟୁଜିଅମର ସୁପରିଣ୍ଟେଣ୍ଡେଣ୍ଟ ସ୍ୱର୍ଗତ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ସେ ସମୟରେ ମୋ ସଙ୍ଗେ ଏହି ଗ୍ରନ୍ଥ "ଅମରୁଶତକ" ସମ୍ପର୍କରେ ବହୁବାର ଆଲୋଚନା କରିଥିଲେ । ୧୭-୭-୬୨ ତାରିଖରେ ବାରିପଦାରୁ ସେ ମୋ' ନିକଟକୁ ଏକ ପତ୍ର ଲେଖି ପଠାଇଲେ —

"ଶ୍ରଦ୍ଧେୟ ସତ୍ୟାନନ୍ଦ, ଅମରୁଶତକ ଉପରେ ଆଲୋଚନା କଥା ଶୁଣି ମୋ ମନ ଯେ କେତେ ଆନନ୍ଦିତ ହୋଇଥିଲା ସେ କଥା ଆଉ କ'ଣ ଲେଖିବି । + + + । ବହୁବର୍ଷ ପୂର୍ବେ ଏ ବିଷୟରେ ଆଲୋଚନା କରି ମିଉଜିଅମରେ ଥିବା ସଚିତ୍ର ଅମରୁଶତକ ପୋଥିକୁ ଛପାଇବାର ଇଚ୍ଛା ଥିଲା—କିନ୍ତୁ କାଳ ପରିବର୍ତ୍ତନ ହେବାରେ ତାହା ହୋଇପାରିଲା ନାହିଁ ।"

ଆଚାର୍ଯ୍ୟ ମହୋଦୟ ମତେ ଗଭୀର ଶ୍ରଦ୍ଧା କରୁଥିଲେ । ତାଙ୍କର ସ୍ନେହାଶ୍ରିତ ସ୍ମୃତିକୁ ଜାଗ୍ରତ ରଖିବା ପାଇଁ ଓ ତାଙ୍କର ଅଭିଳାଷକୁ ପୂରଣ କରିବାଲାଗି ମୁଁ ଅମରୁଶତକର ଓଡ଼ିଆ ଭାଷାନ୍ତର କଲି । ହେଲେ ମୋର ବୃତ୍ତି ଓ ପ୍ରବୃତ୍ତିର ସମନ୍ୱୟ ଘଟିଲା ନାହିଁ । ରାଜନୀତିର କଙ୍କରିଳ ପଥ ମୋର ବାଣୀ-ସାଧନାର ସ୍ରୋତକୁ ବାଧା ଦେଲା । ଅମରୁଶତକର ଭାଷାନ୍ତର ଆତ୍ମପ୍ରକାଶ କରିପାରିଲା ନାହିଁ ।

× × ×

ଆଜ ପୂର୍ବି ଦଶବର୍ଷ ପରେ ୧୯୭୧ ମସିହାରେ ଟିକେ ସମୟ ଓ ସୁଯୋଗ ମିଳିଲା । ଇଚ୍ଛା ହେଲା, ପୁରୁଣା ପାଣ୍ଡୁଲିପିକୁ ଲୋକ ଲୋଚନକୁ ଆଣିବା ପାଇଁ । ଏ ଦିଗରେ ଯେଉଁମାନେ ମତେ ଖୁବ୍ ପ୍ରେରଣା ଦେଲେ ସେମାନେ ହେଲେ ମୋର ଆତ୍ମୀୟ ସ୍ୱଜନ, ବନ୍ଧୁ ସାହିତ୍ୟିକ ତଥା କଳାପ୍ରେମୀ ରାଜନୈତିକ ବନ୍ଧୁଗଣ ।

କରେ କଣ ? ପଦ୍ମଶ୍ରୀ ଆଗ୍ରଫିଙ୍କ ଅଭିଳାଷ ! ପୂରଣ ହେଉ । ତେଣୁ ରାଜ୍ୟ ସରକାରଙ୍କର ସାଂସ୍କୃତିକ ବ୍ୟାପାର ବିଭାଗକୁ ଲେଖିଲି —ରାଜ୍ୟ ସଂଗ୍ରହାଳୟରେ ସାଇତା ହୋଇଥିବା ସଚିତ୍ର ଅମରୁଶତକ ପୋଥିର କେଇଖଣ୍ଡି ଫଟୋଗ୍ରାଫ ନେବାକୁ ଅନୁମତି ଦେବାଲାଗି । ସମୟ ବିତିଲା । ମନ୍ତ୍ରୀ, ସେକ୍ରେଟାରୀ କି ଡିରେକ୍ଟର—କାହାରି ପାଖରୁ ଉତ୍ତର ମିଳିଲା ନାହିଁ । ଭାବିଲି, ଏ ତ ଓଡ଼ିଶା, ଉତ୍କୃଷ୍ଟ କଳା ଭୂମି ଉତ୍କଳ ପ୍ରଦେଶ । ଏ ଦେଶର ସରକାର ତାଙ୍କର ସାହିତ୍ୟ ଓ ସଂସ୍କୃତିକୁ ସଂପ୍ରସାରିତ କଲେ କାଳେ ତାହା ସୀମା ଲଂଘନ କରି ଅନ୍ୟ ପ୍ରଦେଶକୁ ଚାଲି ଯାଇପାରେ ଓ ତାହାଦ୍ୱାରା ନିହାତି ଗୋଟାଏ ଅନ୍ୟାୟ ବା ଅପରାଧ ହୋଇଯାଇ ପାରେ । ତେଣୁ ସେ କଳା ଓ ସେ ସଂସ୍କୃତି କେବଳ ତାଙ୍କର ରାଜ୍ୟ ସଂଗ୍ରହାଳୟ କକ୍ଷ ମଣ୍ଡନ କରୁ । ଏ ସମ୍ପର୍କରେ ରାଜ୍ୟ ବିଧାନସଭାରେ ପ୍ରଶ୍ନ ହେଲା । ସରକାର ଉତ୍ତର ଦେଲେ—

"ସାଂସ୍କୃତିକ ବ୍ୟାପାର ବିଭାଗ ଅଧୀନରେ ଥିବା ଓଡ଼ିଶା ଲଳିତ କଳା ଏକାଡେମୀ ପକ୍ଷରୁ ଏହା ପ୍ରକାଶ କରାଯିବାର ବ୍ୟବସ୍ଥା ଗ୍ରହଣ କରାଯାଉଛି । ଉକ୍ତ ଅମରୁ ଶତକ ପୋଥିଟି ଓଡ଼ିଶାର ଏକମାତ୍ର ପ୍ରାଚୀନ ଚିତ୍ରିତ ପୋଥି ହୋଇଥିବାରୁ ବିଭାଗୀୟ ପ୍ରକାଶନ ପାଇଁ ପ୍ରଥମ ପ୍ରାଧାନ୍ୟ ଦିଆଯାଇଛି । ତେଣୁ ସେ ଅମରୁଶତକର ଫଟୋ ଅନ୍ୟକାହାକୁ ଦିଆଯିବାପାଇଁ ଅନୁମତି ଦିଆଯାଉ ନାହିଁ ।" (ବିଧାନ ସଭା—୬ଷ୍ଠ ଅଧିବେଶନ, ଶୁକ୍ରବାର ଜୁଲାଇ ୨୩, ୧୯୭୬—ଲିଖିତ ଉତ୍ତର ନିମନ୍ତେ ପ୍ରଶ୍ନାବଳୀ, ପ୍ରଶ୍ନ ନଂବର ୧୧୮୪—ଶ୍ରୀ ବାଙ୍କବିହାରୀ ଦାସ, ଏମ୍. ଏଲ. ଏ.) ଭଲ କଥା । ବହୁତ ଖୁସି ହେଲି । ସାହିତ୍ୟ ସରକାରଙ୍କର ହେଉ ବରଂ । ଜଣେ ସାହିତ୍ୟିକର ଅବା ତହିଁରେ ଦାବୀ ବା ଅଧିକାର କଣ ଅଛି ? ଇଏତ ଯେ ଓଡ଼ିଶା । ସରକାରୀ ସଂସ୍ଥା ଓଡ଼ିଶା ଲଳିତ କଳା ଏକାଡେମୀ ପକ୍ଷରୁ ଏହା କେବେ ଆତ୍ମ ପ୍ରକାଶ କରୁଛି ସେ ସୁଦିନକୁ ଅପେକ୍ଷା କରି ରହିଲି ।

ଯାହାହେଉ, ଯେନ ତେନ ପ୍ରକାରେଣ ଅମରୁଶତକର ଓଡ଼ିଆ ଭାଷାନ୍ତର "ପ୍ରୀତି-ଶତକ" ଆଜି ଆତ୍ମପ୍ରକାଶ କରୁଛି । କେଂଉ ଅଧିକ ଖୁସି ହୋଇ ଆଶୀର୍ବାଦ କରିବାକୁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଭୂତପୂର୍ବ ସୁପରିନ୍‌ଟେଣ୍ଡେଣ୍ଟ ଆଗ୍ରଫୀ ମହୋଦୟ ଆଉ ନାହାନ୍ତି । ହତଭାଗ୍ୟ ମୁଁ ।

× + ×

"ପ୍ରୀତିଶତକ" ପ୍ରକାଶନରେ ମୋର ବାଲ୍ୟବନ୍ଧୁ ଶ୍ରୀଯୁକ୍ତ ଲିଙ୍ଗରାଜ ପଣ୍ଡାଙ୍କ ପ୍ରେରଣା ଓ ସହାୟତା ସର୍ବାଦୌ ସ୍ମରଣୀୟ । ପୁସ୍ତକଟିକୁ ଛବିଳ କରିବାରେ ଶିଳ୍ପୀ ୰ ଗୋପାଳ କାନୁନ୍‌ଗୋ, ଖଲ୍ଲିକୋଟ କଳାବିଦ୍ୟାଳୟର ଅଧ୍ୟାପକ ଶ୍ରୀ ରବିନାରାୟଣ ନାୟକ, ସୈନିକ ସ୍କୁଲ କଳା ଶିକ୍ଷକ ଶ୍ରୀ ଉଦୟନାରାୟଣ ଜେନା ଓ ଖୋର୍ଦ୍ଧାର ଶ୍ରୀ ଗୋକୁଳ ପଟ୍ଟନାୟକଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ଅଭିମତ ଲାଗି ପୂଜ୍ୟ ପଣ୍ଡିତ ୰ ନୀଳକଣ୍ଠ ଦାଶଙ୍କ ନିକଟରେ ମୁଁ ଋଣୀ ହୋଇଛି । ମୁଖବନ୍ଧ ଲେଖକ ବନ୍ଧୁ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକଙ୍କୁ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣାତ୍ମକ ଲେଖା ପାଇଁ ମୁଁ ମୋର ଅନ୍ତରର ଶ୍ରଦ୍ଧା ଜଣାଉଛି ।

'ମାତୃଭୂମି'ର ସମ୍ପାଦକ ବନ୍ଧୁ ବିଚିତ୍ରାନନ୍ଦ କରଙ୍କର ପ୍ରୋତ୍ସାହନ ମୁଁ ଭୁଲିବି ନାହିଁ । ଶେଷରେ, ଭୁବନେଶ୍ୱର ଶ୍ରୀ ଲୋକନାଥ ପ୍ରେସର ଅଧିକାରୀ ଶ୍ରୀ ମୁରଲୀଧର ଶତପଥୀ ଓ ପ୍ରେସ କର୍ମଚାରୀଗଣଙ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ ଏ ପୁସ୍ତକର ମୁଦ୍ରଣ କାର୍ଯ୍ୟ ସ୍ୱଳ୍ପ ସମୟ ମଧ୍ୟରେ ଶେଷ ହୋଇପାରିଲା । ତେଣୁ ସେମାନଙ୍କୁ ମୁଁ ଧନ୍ୟବାଦ ଦେଉଛି ।

ଯୁଗର ରଂଗ ବଦଳି ବଦଳି ଯାଉଛି । ଯାହା କିଛି ସତ୍ୟ ଓ ଶାଶ୍ୱତ, ତାହା କ୍ରମଶଃ ପାଣ୍ଡୁର ଓ ରଂଗହୀନ ହେଉଛି । ଯୁଗର ମନ କ୍ଷତ, ବିକ୍ଷତ ଓ ଅଶାନ୍ତ ହେଉଛି । ଏଇ ପରିସରରେ "ପ୍ରୀତି-ଶତକ" ଯଦି ପାଠକମାନଙ୍କୁ ଟିକେ ସରସ ଓ ସତେଜ କରିପାରେ ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।

ଦଶହରା, ୧୯୭୧



ଶ୍ରୀ ଲିଙ୍ଗରାଜ ପଣ୍ଡାଙ୍କୁ.... .... .... .... ....

ବନ୍ଧୁ ହେ ତୁମେ ମାଟି ପଥରରେ
କବିତା ଲେଖୁଛ,
ମମତା ଢାଳୁଛ,
ଫୁଟାଉଛ କେତେ ଫୁଲ ।

କାଳି କଲମର କବିତା ଏ ମୋର
ଜାଣେନି ଜଗତେ,
ତବ ହୃଦ ଗତେ
କେତେ ହେବ ତାର ମୂଲ !!

ତୁମେ ଏ ମାଟିରୁ ମଣିଷ ହୋଇଛ
ବଡ଼ ବୋଲାଇଛ,
ବୋଲି ତୁମକୁ ହେ
ଆଦର କରୁଛି ମନ ।

ଯେତେ ଅନାଦୃତ ଜନେ ଆଦରିଛ
ପ୍ରୀତି ବିତରିଛ,
ସେ ଲାଗି ଅରପେ
ଶ୍ରଦ୍ଧାର ନିବେଦନ ।

## ମାଙ୍ଗଳିକୀ

ପ୍ରତ୍ୟୁଷାସ୍ମିତ ରଙ୍ଗ-
ବକ୍ଷେ ଲୀଳାବତୀ-
ବଦନ ଶୋଭା,
ଦୋଳାୟମାନ ବେଣ
କର୍ଣ୍ଣଭୂଷା ଯେମ
ଆହା କି ଲୋଭ !!

ଅଳକ ଆକୁଞ୍ଚିତା
ଚୂମ୍ବର ଲଲାଟିକା
ସୁରତ ସ୍ୱେଦେ,
ଆଳସ ବିଧୁତ
କଳିତ ସୁଲଳିତ
ପୀରତ୍ତ ମଦେ,
କ୍ଳାନ୍ତ କମନୀୟ ନୟନ,
ଏ ଶିରୀ ଭବ ଯେଉଁ ଲପନ-
ସେ ସାହା ହେଉ ସଦା ତୁମରେ,
ଭଜିବା ବୃଥା ହବ ଶିଳ୍ପକର ।

# ଅମୃତ-ସନ୍ଧାନ

ବଧୂର ଅଧରେ
ମଧୁ ଚୁମ୍ବନ ଲଭି
ଚକିତେ ଦୁଲଇ
ଭ୍ରୂଲତା ବଲ୍ଲରୀ
କହଇ, 'ହେ ଶଠ, ଛାଡ଼ !'

ଭ୍ରୂଲତା ନଚାଇ
ଛଳ କୋପ ବହ୍ନି
ଛଇଳା ଛୁଅଇ ଆଡ଼ ।

-ସୀତ୍କାରେ ମୁଦେ
ଯୁଗଳ ନୟନ,
ତନୁ ଲତିକାରେ
ଜାଗେ କମ୍ପନ-
ଏପରି ନାରୀକୁ ଯେତ୍ତୁ,

ବଳେ ଚୁମ୍ବଇ
ରସିକ ନାଗର
ଅମୃତ ଲଭେ ସେତ୍ତୁ ।

ସୁଧା ପିବା ଆଶେ
ପ୍ରେୟସୀ ଅଙ୍ଗରେ,
ଦେବତାଏ ମିଳି
ମନ୍ଥି ସାଗରେ,
ବୃଥା କଲେ କିଆଁ ଶ୍ରମ !

ମହୋଦଧି ସୁଧା
ହୋଇ ପାରିବ କି
ଅଧରାମୃତ ସମ !!

# କପଟ-କେଳି

" କୋମଳାଙ୍ଗି ଗୋ !
ଗାଢ଼ ଆଶ୍ଲେଷେ ତୋର ତନୁତଟୁ
ଚନ୍ଦନ ରଜ ଝରି,
କୁସୁମ ପେଲବ ତଳପ ଦେଖୁଚୁ
କର୍କଶ କେଉଁପରି ?"

-ଏହି ଛଳ କଥା କହି ସେ ନାଗର
ତୋଳି ନେଇ ମତେ ବଳେ,
ସହି ଲୋ ନଜର ବକ୍ଷ ଉପରେ
ଶୁଆଇଲେ କଉଶଳେ ।

ତା' ପରେ ଆକୁଳେ
ନବଢ଼େ ଅଧରେ
ଚୁମ୍ବନ କେତେ ବୋଳି,
ପଦ ଅଙ୍ଗୁଳି ଚଳାଇ ଯେ ନୀବୀ-
ବନ୍ଧ ମୋ' ଦେଲେ ଖୋଲି ।

ଆଉ କି କହିବି ଯେତେବେଳର ଲୋ
ମରମର କଥା ଯାହା,
ବଳେ ବଳେ ସହି
କେତେ ପରକାରେ
ଶଠ କରିଗଲେ ତାହା ।

# ବିୟୋଗେ ସ୍ମୃତି

ଗାଢ଼ ଆଶ୍ଳେଷ ଫଳେ ବଲ୍ଲରୀ
ବେନ ବର୍ତ୍ତୁଳ ସ୍ତନ,

ଖର୍ବ ଆକାର ଲଭିଲ କେସନେ
ମଞ୍ଜୁଳ ସୁଶୋଭନ ।

ତନୁତୀରେ ତାର ମଧୁ ରୋମାଞ୍ଚ
କେସନେ ବିକଳ ପ୍ରାୟେ,

କାତ ହୋଇଗଲା, ପ୍ରୀତି ଘନ ରସେ
ଝୀନ ବାସ ଛାଏଁ ଛାଏଁ

ଖସି ଖସି ଗଲ ଝରୀ ନିତମ୍ବୁ,
କପଟ ସେ ରସବତୀ

କହିଲା, "ହେ ପ୍ରିୟ, ଛାଡ଼ ମରିଗଲି
ବଳାନାହିଁ ମତେ ଅତି......"

ଅଳପ ଝଷିଣୀ ରତି-କେଳି-କଳା-
କୁଶଳା ସେ ବାଳା ସତେ,

ପ୍ରୀତିର ସପନ କୋଳେ ଶୋଇ ରହି
ସ୍ମରୁଥିବ କି ମତେ ?

କାହିଁ ସେ ରହିଛି, ଲୀନ କି ବିଲୀନ
ଏ ମୋର ମାନସ କଣେ-

ପରବାସେ ରହି ଭଲ୍ଲେ ପ୍ରିୟାରେ
ବିୟୋଗୀ ବିଧୁର ମନେ ।

( ତାଳ )

## ସରମେ ମରେ...

ଶୂନ୍ୟ କେଳି ପୁର
ଆଉ କେ ନାହିଁ
ପହୁଡ଼ା ପ୍ରାଣପ୍ରିୟ
ପତିରେ ଶୁହିଁ-
ଚପଳା ପ୍ରେମାତୁର
ଛଇଳା ବଧୂ
ତଳପ ପରୁ ଧୀରେ
ଅଳପ ଜାଗି
ମୁଖରେ ମୁଖ ରଖି
ପିଇବା ଲଗି
ନିଦ୍ରାଗତ ପତି
ଅଧର-ମଧୁ ।

ଚୁମ୍ବ ଦେଇ ଦେଇ
ଦୟିତ ମୁଖେ,
କପୋଳେ ଜାତ ଶତ
ପୁଲକ ସୁଖେ
ତା' ଦେଖି ନବବାଳା
ସରମେ ମରେ ।
ଶୟନ ଆଳ ତେଜି
ସହାସେ ପତି
ଚୁମ୍ବି ବାର ବାର
ସେ ପ୍ରୀତିବତୀ
ସୁରତ-ରସେ ତାର
ସରମ ହରେ ।

( ପାନ୍ଥ )

# ପ୍ରିୟର ପ୍ରସ୍ତାବ

କମଳ ଲୋଚନା !
କରୁଛୁ ତ କୋପ-

କୋପ ହେଉ ପ୍ରିୟ-
ମନା କରୁଅଛି କଏ ?

କିନ୍ତୁ ପୁଲକେ,
ଚୁମ୍ବନ ଯେତେ

ଦେଇଅଛି ତୋତେ
ସବୁ ଲେଉଟାଇ ଦଅ !

ସ୍ନେହ ଭରା ଶତ
ଘନ ଆଶ୍ଳେଷ
ମୋ ପାଇଁ ଲଭିଛୁ ଯାହା,

ସେସବୁକୁ ଆଜି
କୋପମୟୀ ଅଗୋ
ଫେରାଇ ଦଅ ଲୋ ତାହା !!

## ପ୍ରୀତି-ପ୍ରଚ୍ଛଦ

କାହିଁ ଲଗିଅଛି ତାମ୍ବୂଳ ରସ
ଅଗରୁ ପଙ୍କେ ମଳନ ଦଶେ କେ ଥାନ,
କାହିଁ ଝଡ଼ିଅଛି କର୍ପୂର ଚୂନ
ଅଳତା ରକ୍ତ ପଦ ସଙ୍କେତମାନ ।
କେତେ ଢଙ୍ଗରେ ତରଙ୍ଗାୟିତ
ନାୟିକାର ଶେଯ ଆସ୍ତରଣର ଶୋଭ
ଅଳକୁ ପଡ଼ିତ ମଉଳା କୁସୁମ
ଝର ତହିଁ ପରେ
ଦଶଇ ନୟନ-ଲୋଭ ।

ଏସନ ରଙ୍ଗ ଢଙ୍ଗ ମୋହନ
ଅଙ୍କରେ ବନ୍ଧୁ
ନାୟିକା ଆସ୍ତରଣ,
ପ୍ରକଟେ କାମିନୀ
ଯାପଛି ଯାମିନୀ
ପ୍ରିୟ ତୁଳେ ରତି
ବହୁବିଧ ନିଧୁବନ ।

( ସାଜ )

# ସୁରତାରମ୍ଭେ

"କଞ୍ଚୁଳୀ ବନା    ମୁଗ୍ଧ ନୟନା
ତୋ ତନୁ ଶୋଭ,
ରମଣୀୟ ରୂପ    ଧରଅଛ ଆଜି
ନୟନ ଲୋଭ । "
-ଏ ଚାଟୁ ବଚନ    କହୁ ପ୍ରିୟତମ
ଅଳପ ହସି,
ବଲ୍ଲଭୀ ଚାରୁ    ବେଣୀକା ଛୁଇଁଲେ
ତଳପେ ବସି ।
ଅଳୀକ ବଚନେ    ଉକୁଟିଲ ସ୍ମିତ
ପ୍ରିୟା ବଦନେ
ନୟନରେ ପ୍ରୀତି-    ବିଳାସ ବିଲୋକ
ତା' ସଖୀ ଜନେ ।
ଅତି କଉତୁକେ    ଆଳ କଥା କହୁ
ତହୁଁ ତୁରିତେ,
ତା' କେଳି ସଦନୁ    ଦୂର ହୋଇଗଲେ
ଫୁଲ୍ଲ ଚିତ୍ତେ ।

# ଅନୁତାପ

ସ୍ମରଇ ଆଜି ମନେ-
ଏଡ଼କ ଅବିବେକୀ କାହିଁକି ହେଲି,
ମୋ' ପ୍ରିୟତମ ଗଲେ
ନିବିଡ଼ ଆଶ୍ଲେଷ କିଆଁ ନ ଦେଲି ?
ଚୁମ୍ବି ମୋ' କପୋଳେ
ସେହୁତ ଦେଉଥିଲେ ମୁହିଁ କି ପାଇଁ,
ଲାଜ ସରମେ ମରି
ରହିଲି ମଥା ପୋତି ତଳକୁ ଚାହିଁ ?
ପ୍ରୀତି ଆଳାପ କେତେ
ମୋ ତୁଲେ କରୁଥିଲେ ମୋ' ପ୍ରିୟ ପତି,
ନ କହି ମଧୁ କଥା
ସବେ କି ପାଇଁ ହେଲି ମଉନାବତୀ ?
ବଦନ-ସୁଧା ମୋର
ସେହୁତ ପିଉଥିଲେ ନିରେଖି ମତେ,
ସେ ପ୍ରିୟ ଚାରୁ ମୁଖେ
ନ ଚାହିଁ କି ପାଇଁ ମୁଁ ରହିଲି ସତେ ?
ବିଗତ କଥା ସ୍ମରି
କରଇ ଅନୁତାପ ନବୀନା-ବଧୂ,
ପରାଣେ ତାର ଯେବେ
ଜାଗଇ ଅବିରତେ ପୀରତି-ମଧୁ ।

( ନଅ )

# ବସ୍ତ୍ରଛା

''ଘନ ଶ୍ଳେପିତ କାହା ସ୍ତନ ସ୍ରଗ
ବକ୍ଷେ ବହୁଛ
ଗାଢ଼ ଆଶ୍ଳେଷ ଫଳେ,

ଗୋପନ କରୁଛ କଲଗି ତାହାରେ
ଶଠ ପ୍ରିୟତମ
ପ୍ରଣମି ଏ ପଦ ତଳେ ।''

ଏସନେ କୋପିନ କହନ୍ତେ ମୁଁ ସେ
ଶଙ୍କିତ ମନେ
ପଚାର- ''କେଉଁଠି ? କାହୁଁ ?''

ପ୍ରୀତି ଭରେ ଗାଢ଼ ଆଶ୍ଳେଷ ଦେଲ
ଖ୍ରୀତ-ମାନନୀର
ମନ ଭୁଲଇବା ପାଇଁ ।

ଘନ ଆଶ୍ଳେଷେ କ ସୁଖ ଲଭି ସେ
ଅଧୀର ହୋଇଲ
ହେଲ ରସ ଘନ ମନ,

ସେ ସୁଖେ ଭୁଲଲ ପ୍ରୀତଶୀଳା ମନୁ
ନମିଷେକ ସେହି
ମୋର ହୃଦ ଲଷ୍ଟିନ ।

# ପ୍ରେମିକା ନେତ୍ର

ନବ ଛଇଳା ଲୋ, ଲଜ୍ଜା ଚଞ୍ଚଳ,
ପ୍ରୀତି ଜର ଜର ନୟନେ ତୋର,
ସେ କେଉଁ ସୁଭଗେ ଆଜି ସପୁଲକେ
ଚାହିଁ ଅପଲକେ ହୋଇଲୁ ଭୋଳ ।

ଅଳସ ପାଉଁଳା ତୋ ବେନି ନୟନ
କଲୁ ଉନ୍ମୀଳନ କ୍ଷଣକ ପରେ,
ପୁଣି ବାର ବାର ଆଡ଼ ଚାହାଣୀରେ
ଚାହିଁଲୁ ନାଗରେ ଆବେଗ ଭରେ ।

ଲାଜୁକ ନୟନ ତୋର ଲୋ କେସନେ
ପୁଣି ଏଣେ ତେଣେ କରିଲୁ ଚଞ୍ଚଳା ?
ପରଶ ପୋଥିରୁ ହୃଦୟ ସାଇତା
ପୀରତିର କଥା ଫିଟାଇ ଦେଲ !

# ଅଭିସାରିକା

ଅଭିସାରିକା ଗୋ
ଉରସେ ପକାଇ
ଉଜ୍ୱଳ ହାର
ଘନ ଜଘନରେ
କଳକଳବତୀ
କାଞ୍ଚୀ ମାଳ ।
ଚରଣ ପଡ଼ିଲେ
ରୁଣୁ ରୁଣୁ କରେ
ମଣି ନୂପୁର,
ତନୁ ଆଭରଣେ
ବାଦ୍ୟ ବଜାଇ
ଝଣତ୍କ୍ରୀ ପୁର,
ଚଳ ଯଦ୍ଧ ତମେ
ଅଭିସାର ପଥେ-
ତେବେ କାହିଁକ,
ଭୟେ ଭୟେ ଚାହଁ
ଏଣୀ-ନୟନା ଗୋ
ଚଉବାହିଁକ ?

# ପଦ୍ମ ପରାଗ

ଦୟିତ ଅଧର ତଟେ ଦେଖି ବଧୂ
ଆନ ଲଳନାର ଦନ୍ତ କ୍ଷତ,

ଲୀଳା ତାମରସେ ରୋଷେ ପ୍ରହାରିଲା
ପତି ମୁଖେ ହୋଇ ମର୍ମାହତ ।

ସେ ତାଡ଼ନା ଫଳେ ନୟନ ଯୁଗଳ
ନିମୀଳିତ କରି କାନ୍ତ ଧୀରେ,

ଉକ୍ତ ହେଲେ, ଯେତେ ପଦ୍ମ ପରାଗ
ପଶି ଯାଇଥିଲା ନେତ୍ର ତୀରେ !!

ଚତୁରୀ କାନ୍ତା ଶଙ୍କିତ ମନେ
ନୟନୁ କେଶର ଝାଡ଼ିବା ପାଇଁ,

କୋରକିତ କରି ଚାରୁ ମୁଖ ତାର
ଫୁଙ୍କିଲା ପତି ବଦନେ ଚାହିଁ ।

ଧୂର୍ତ୍ତ ଦୟିତ ନିଜ ଦୋଷ ଲାଗି
ଲେଟିବେ କଅଣ ପୟର ତଳ,

ବଧୂର ବଧୁଳି ଅଧରେ ମଧୁର
ଚୁମ୍ବ ବୋଳିଲେ ଥରକୁ ଥର !!

( ଛଡର )

# ଧୀରେ କହ, ଶୁଣିବେ...

ମୁଗ୍‌ଧା ନାୟିକାରେ    କହଇ ସଖି,
"କେସନେ କାଳ କାଳ   କଟାଇ ଦେବୁ କହ
  କାନ୍ତ ତୁଳେ ତୋର ଏ ମୋହ ରଖି ?

ହୃଦୟେ ଭର ସହ    କଠିନ ମାନ,
ପରାଣେ ଧର ଧୃଢ,    ମୋ କଥା ମାନ,
ଏସନ ସରଳତା    ବରଜ ସହ
ପଷଣ ପ୍ରିୟତମେ    ବଶ ତୁ କର ଶିଖ
  କପଟ କୋପେ ନାନା ବଚନ କହ ।"

ସେ ସଖି ଶିଖାଣରେ    ନାୟିକା ଥାଇ,
କହଇ, "ମିତ ଲୋ ତୋ' ବୁଦ୍ଧି ନାହିଁ,
କହଲୋ, କହ ଧୀରେ    ନରମ ସ୍ୱରେ
ଶୁଣିବେ ପ୍ରାଣପ୍ରିୟ ସେ   ପରା ଗୋପନରେ
  ବିରାଜମାନ ମୋର ହୃଦୟ ପୁରେ ।"

( ଚଉପଦୀ )

# ବୃଥା ସଂକଳ୍ପ

ଶଠ ପ୍ରିୟତମ ମୁଖ ନ ଚାହିଁବି ଆଉ-
ଷବ ମନେ ଯେତେ ଭ୍ରୂରୁ କମ୍ପନ କରେ,
ଏ ନୟନ ତୃଷା ସଖି ଲେ ବୁଝିବୁ କାହୁଁ
ଯେ ପଷ ସେ ମୁଖେ ଚାହିଁଇ ଆବେଗ ଭରେ।

ପୀରଛ ଆଳାପ ଆଉ ସେ ନାଗର ସହ
କରବନ-ଷବ ଯେତେ ମୁଁ ସମୟ ଯାପେ,
ହିଆ ତଳେ ବ୍ୟଥା ହୁଅଇ ଦୁର୍ବିସହ
ପୋଡ଼ା ମୁଖେ ମୋର ହସ ଉକୁଟଇ ଆପେ।

ପଥର ସମାନ କଠିନ କଲେ ଏ ହିଆ
ଟାଣ ପଣ ସହି ଷଜି ଯାଏ କେଉଁ ପର,
ମନ ତଳେ ତଳେ କିଏ ସେ ଲଗାଏ ନିଆଁ
ତନୁ ତୀରେ ଘନ ଷେମାଞ୍ଚ ଯାଏ.ଭର।

ସେ ଶଠ ନାଗର ରସିକ ପ୍ରଣୟୀ ଯବା
ସବୁ ତ ବୁଝିଛ ଜାଣିଛ ପଷଣ ସହି,
ସଂମୁଖେ ମୋର ଆସି ହୋଇଗଲେ ଉଷ
ହୃଦୟେ ଗୋ ମାନ କେସନେ ପାରିବ ରହି ?

( ପଢ଼ର )

# ଅପାଙ୍ଗ ମିଳନ

ନବ ଦମ୍ପତି ମଧୁରେ ବଧୂରେ
ପ୍ରୀତି ଅଭିମାନୀ ହୋଇ,
ବିପରୀତ ଦିଗେ ମୁଖ କରି ଏକ
ଶଯ୍ୟାରେ ଥିଲେ ଶୋଇ ।

ମଉନେ କେନଏ କଟାଇଲେ କାଳ
କିଏ ବା କହନ୍ତୁ କଥା ?
ନିର୍ଜନ କେଳି ସଦନ ଭରଇ
ମାନସେ ଦାରୁଣ ବ୍ୟଥା ।

ଏ ମାନ ମଉଳୁ ବୋଲି କେଳିଜନେ
ହୃଦୟେ କାମନା କରି,
ରହିଥିଲେ ସିନା ନିଜର ଗାରିମା
କେ ବରଜେ କେଉଁ ପରି ?

ଧୀରେ ଧୀରେ ଦୁହେଁ ନୟନର ତାରି
ବୁଲାଇଲେ ଧପତନେ,
ଅପର କି କରେ ନିରେଖିବା ଆଶେ
ଏବି ନିଜ ନିଜ ମନେ ।

କେବଳ କନୀନିକା ମିଳିଗଲା ଯହୁଁ
ସେ ଦୁହେଁ ଉଠେ ହସି,
କଣ୍ଠକୁ ଭିଡ଼ି ଦୃଢ଼ ଆଶ୍ଲେଷେ
ନିବିଡ଼େ ଗଲେ ସେ ମିଶି ।

( ବଷୋ'ଳ )



# ଦକ୍ଷିଣ ନାୟକ

ଏକ ଢଗେ ମୁଖ କରି ଏକାସନେ
ଆସୀନା ଗୋ ବେନ ନାୟିକା
କେତେ କେଳି ସୁଖ ଆଳାପେ ନିଜକୁ
ଭୁଲୁଥିଲେ ପ୍ରୀତି-ଦାୟିକା···
ବେନ ନାୟିକା ।

ଏ ସମୟେ ପ୍ରିୟ ନିଶବଦେ ପଛୁ
ଆସି ପ୍ରୀତି ରସ ଛଳେ ଗୋ,
ଏକ ନାୟିକାର ନୟନ ମୁଦିଲେ
ରତିକଳା କଉଶଳେ ଗୋ···
କୁତୂହଳେ ଗୋ ।

ତା ପରେ ଅଳପ ବଙ୍କାଇ ଗ୍ରୀବା
ପ୍ରୀତି ପୁଲକିତ ମାନସେ,
ହୃଦୟର ହାସେ ଗଣ୍ଡ ଶୋଭିତା
ଚୁମ୍ବିଲେ ଆନେ ରଭସେ, •
ପ୍ରୀତି ପରବଶେ ।

# ଶଠ ରୀତି

କହିବ କଥ ଆଳେ ସଜନୀ,
ଦୁଷ୍ଟ ଦୟିତ ମୋ
ଗୋପନ କଥା କେତେ,
ବଦନ ସ୍ଥଳେ ନେଇ
କହିବେ ବୋଲି ମତେ
ଡାକିଲେ ବାରବାର- 'ଶୁଣନ' !

ସେ ଛଳ କଥାରେ ଗୋ
ପରତେ ଗଲି ମୁହିଁ
ବଦନେ ପ୍ରିୟ ପାଶେ
ବସିଲି ସିନା ସହି
ଜାଣିଚ, କିସ କଲେ ସେହି ଲେ ?

ଗୁପତ କଥାମାନ
କହିବା ଛଳନାରେ
ବଦନ ଗନ୍ଧ ସେ
କପଟ ସେବୁଥିଲେ
କର୍ଣ୍ଣମୂଳେ ମୁଖ ଦେଇ ଲେ ।

ସେତକ ନୁହେଁ ସହି
ଜବଡ଼େ ଧରି ମୋର କବରୀ,
ଅଧରୁ ମଧୁରସ
ପିଇଲେ ମନ ଭରି
କିଭଳି ଶଠ ରୀତି ଆଚରି !!

# ପ୍ରୀତି-ଦଂଶିତା

ପ୍ରବାସ ବାହୁଡ଼ା ପ୍ରିୟତମ ଯେବେ
ଗୃହେ ହେଲେ ଉପଗତ,
ନବବଧୂ ମନେ ରତି ନିଶା ଆଶା
ସହସା ଜାଗିଲା ଶତ ।

ସୂର୍ଯ୍ୟ ସମ ଯାଏ ବାଳ ଦିବା କାଳ
ରଜନୀକୁ ଚାହିଁ ଚାହିଁ
ବଧୂ ସୁବଧୂର ନିଭୃତେ ମଧୁ
ସ୍ୱପ୍ନ ମିଳନ ପାଇଁ,

କିନ୍ତୁ ନଣୀଥେ କେଳିପତ୍ରରେ ତାର
ମୂଢ଼ ପଢ଼ଜନେ ଦେଇ,
ପ୍ରିୟତମ ତୁଲେ ଲମ୍ବାଇଦେଲେ
ନାନା କଥା କେଇ କେଇ

ଏ ରୀତି ନିରେଖି ମନେ ହୋଇ ଦୁଃଖୀ
କାମାତୁର ସୁଚତୁରୀ
'କି ଏକ ଦଂଶି ଦେଲା ଆଲୋ ମତେ'
ବୋଲି ପକାଇଲା ହୁରି ।

ତା'ପରେ ଆତୁରେ ସେ ଗୋ ସତ୍ୱରେ
ଗଲା ଧାଇଁ ଏଣେ ତେଣେ
ତା'କ୍ଷୀଣ ବସନ- ପବନେ ପ୍ରଦୀପ
ଲିଭିଗଲା ତତକ୍ଷଣେ !!

( ଉଣେଇଶି )

# ଚତୁରୀର ଚାତୁରୀ

ଦୂତିକା ଲୋ ! କହ-
କସ୍ତୁରୀ-ଚନ୍ଦନ-ଚିତା-ଶିରୀ ତୋର
ଲିଭି ଅଛି କାହିଁ ପାଇଁ ?

ଚାରୁ ଚଟୁଳ ତୋ ଅଧର ତଟରେ
ତାମ୍ବୂଳ-ରାଗ
ରକ୍ତିମା ଆଉ ନାହିଁ ।

ନୟନ ପ୍ରାନ୍ତ କଜ୍ଜଳ ରେଖା
କାହିଁ ଗଲା ତୋର ?
ଚିହ୍ନ ନାହିଁ ତ ଟିକେ ।

ନବ ତରୁଣୀଲୋ
ଜାଣିବ କେମନେ-
କାହିଁକି ତୋ ଏତେ
ରୋମାଞ୍ଚ ତନୁଟୀରେ ?!

ଜାଣୁନୁ ଯାତନା କେତେ ଦେଉ ତୁହି
ମୋପରି ସହିତରେ-
ବୁଝୁନୁ ମରମ ଭାଷ,

ମିଥ୍ୟା ବାଦିନୀ,
ଅବଗାହିଲୁକି କେଉଁ ସରସୀରେ
ନ ମିଳି ଅଧମ ପାଶ ?

( କୋଡ଼ିଏ )

# ମାନର ଭବିଷ୍ୟତ

ଯା' ନାମ ଶୁଣି ତନୁ-
ଲତାରେ ମୋହର ଗୋ
ପୁଲକ ଘନ ଷଣେ ଜାଗଇ,

ଯା' ମୁଖ-ଶଶି ଦେଖି
ଏ ମୋର ତନୁ ତୀରେ
ସ୍ୱେଦ କଣିକା କେତେ ଝଳଇ ।

ଝରଏ ଯେସନେ ଗୋ
ଶୀତଳ ଶଶି-କାଂତ ମଣିକା,
ଜ୍ୟୋଛନା ଘଟେ ଜଳ କଣିକା ।

ମୋ ପ୍ରାଣ ପ୍ରିୟ ମୋର
ପୁରତେ ହୋଇ ଉଭ
ମଧୁର ହସ ହସ ବଦନେ,

ଏ ମୋର କଣ୍ଠେ ଗୋ
ନବଡ଼ ଆଶ୍ଳେଷ
ବହିବେ କେତେ ଯେଉଁ ଲଗନେ-

ସେକାଳେ ସଜନୀ ଲୋ
କଠିନ ମାନ ଲଗ ସବନା
ମୋହର,ସତେ ଆଉ ଥିବନା ?

( ଏକୋଇଶି )

## ବହୁଦନ ପରେ···

ଝର    ବରହୀ ପ୍ରଣୟୀ ଯୁଗଳ,
ରତ    ଆବେଗେ ଅଙ୍ଗ ଶୀଥିଳ ।

ବହୁ    ଦବସ ଅନ୍ତେ ଯେବେ ସେ
ମିଳ    ସମାଦର କଲେ ହରଷେ,

ନୂଆ    ନୂଆ ଲଗିଲା ଏ ଜଗତ
କ୍ରମେ    ଦୀର୍ଘ ଦବସ ବଗତ ।

ଯେବେ    ରଜନୀ ହୋଇଲା ପ୍ରବେଶ
. କଥା    କେବଳ ଲମ୍ବେ ଅଶେଷ ।

ସେହି    ଅନୁପାତେ ରତ ନୋହିଲା,
କାମ-    ପୀଡ଼ା ସିନା ଦହ ଦହିଲା ।

•

## ଦୁଃଖ ମୋହର ପଥି ··

କେତେ ଉଜାଗର ରଜନୀ ଯାପିବ
ଶଠ ତୁମେ ନିତ
ନିତ ପ୍ରତ୍ୟୁଷୁ ଆସ,

ଅଙ୍ଗେ ତୁମର ସମ୍ଭୋଗ ଦାଗ
ନିରେଖି ଏ ମୋର
ନୟନ ଲଭଇ ତ୍ରାସ ।

ହୃତ ସଙ୍ଗିନୀ ମୁଁ ରୁଗ୍ଣା ନାୟିକା-
ନୟନୁ ନିଦ୍ରା
ଗଲା କେଣେ ଅପସରି,

ଗୌରବ ହୀନା ଲଘୁ ହୀନମାନା
ମରଣ ଭୀତକୁ
ମନୁ ଅଛି ଦୂର କରି ।

ଯାଅ ତୁମେ ଶଠ
ସଂମୁଖୁଁ ମୋର
କ୍ଷଣେ ରହ ନାହିଁ ଏଥି,

ଶୁଣିବ ଦୁଃଖେ
ଭସ ଏଇ ପୁର
ଦୁଃଖ ମୋହର ପଥି ।

( ତେଜଣି )

# ମାନଭଞ୍ଜନ

କରିବ କିଯ କନ୍ଦ ସହିତଲ,
କେସନେ ଅପରାଧୀ
ପରାଣ ପ୍ରିୟ ତୁଲେ
ରହିବ ହୃଦେ ମାନ ବହ୍ନି ଲେ ।

ମୁଁ ଯେବେ ମୂହଁ । ମୁହିଁ ହୁଅଇ କେତେବେଳେ
ନୁଆଇଁ ଦଏ ମୋର ବଦନ,
ପ୍ରିୟରେ ନ ଅନାଇ ଚରଣ ପରେ ସହି
ଥାପଇ ସିନା ବେନି ନୟନ ।
ଆଉତୁ ଥିବୁ ଜାଣି, ଦୟିତ ମଧୁବାଣୀ
ଶୁଣିବା ପାଇଁ ଚିର ପିଆସୀ—
କର୍ଣ୍ଣ ଯୁଗଳରେ ମୁଦ୍ରଇ ଚାପି କରେ
ଅଛ ନିଠୁର ସ୍ୱର ପ୍ରକାଶି ।
ଗଣ୍ଡେ ପୁଲକେ ସ୍ୱେଦ କଣିକା ଯେତେ
ଜାଗିଛ ବାର ବାର ସଜନୀ,
ସବୁକୁ ଲୁଚାଇଲି ମୋ କର ଆଚ୍ଛାଦ—
ଆଉ କି କରିଅଛି କହନି ?

ଏନ୍ତୁ କି କରିବ, ଯେବେ ମୋ କାଞ୍ଚଲ
ସଞ୍ଚି ଶତବାର ଫାଟିଲ,
ମୋ ପ୍ରାଣ ପ୍ରିୟ ତୁଲେ
କଠୋର ମାନ ମୋର ଭାଜିଲ ।

( ଚଉଡି )

## କୋପପ୍ରିୟା

କପୋଳ ଚଳକ
ଢଅଁ ତୋର ପୋଛୁ
କରତଳେ ମୁଖ
ରଖି ଆଛେ ଚନ୍ଦ୍ରମୁଖୀ,

ମଦିର ମଧୁର
ତୋ' ଅଧର ରସ
ଘନ ନିଃଶ୍ୱାସେ
ଏବେ ଯାଉଅଛି ଶୁଖି ।

କଣ୍ଠ ତୋର'ଲେ
ବାଷ୍ପ ରୁଦ୍ଧ
କମ୍ପିତ କୁଚ
ବାର ବାର କାହିଁପାଇଁ,

ହେ ପାଷାଣୀ ପ୍ରିୟେ !
କୋପ ହେଲା ତୋର
ଏତେ ପ୍ରିୟ ପୁଣି
ମୁଁ ତୋହର ହେଲି ନାହିଁ ?

( ପଲ୍ଲି )

# ପ୍ରଥମ ନଧୁବନ ସମୟେ...

ପ୍ରଥମ ନଧୁବନ ସମୟେ,
ପଡ ଟାଣିଲେ ବାସ,
ନବୀନା ବଧୂ ଆଗୋ
ତଳକୁ ପୋତେ ମଥା ଲଜ୍ୟେ ।

ବାହୁ ବଳୟେ ତୋଳ
ନିବିଡ ଅଶ୍ଳେଷ
ବହିଲେ ପ୍ରିୟତମ
ତାହାର ତନୁଦେଶ
ସେହି ତ କଉଶଳେ ରଭସେ,
ନିଜକୁ ନିର୍ଜନେ
ଖସାଇ ନେଇ କେତେ ?
କହିବ କଥା ସବେ ହରଷେ ।

ହାୟ ସେ କାଳେ ଦେଖି
ନିକଟେ ସ୍ମିତମୁଖୀ ସଖୀରେ,
ଦୟିତେ କଉତୁକ-
କଥା ନ ପାରି ଆଉ କହିବେ
ଶର୍ବରୀ ପାଏ ପୀଡ଼ା ହୃଦୟେ,
ନବୀନା ବଧୂ ଆଗୋ,
ପ୍ରଥମ ନଧୁବନ ସମୟେ ।

( ଛବି )

## କାନ୍ତ ପ୍ରବାସ କାଳେ···

ନଭେ ଦେଖି କଳା
ବଉଦ ମାଳା
ନୟନରେ ଭରି
ଲୋତକ ବାଳା
କହିଲି 'କାନ୍ତ
ଯିବ ଯଦି ପରବାସ···'
ବାକ୍ୟ ନ ପୂରେ
ବଚନ ନ ସରେ
ଅର୍ଦ୍ଧେକ ପରକାଶ ।

ବସନ ମୋ ଧରି
ବିଧୁ ବଦନୀ,
କି ଲେଖିଲି ପାଦେ
ଖୋଳ ଅବନୀ ।
ତା'ପରେ ବିଧୁରେ
ପ୍ରାଣ ଅଧୀରେ ମୋ ସହି
କାମ ଦଶା ଫଳେ
ଯାହା କରିଥିଲି
ବଚନେ କି ହେବ କହି !!

( ସତେଇଶି )

# କୋପ ଗୋପନ

ଦୂରୁ ଆସୁଥିବା ଅପରାଧୀ ପ୍ରିୟେ
ଦେଖି କୋପମୟୀ ପ୍ରିୟା,
ଏକାସନେ କାଳେ ବସିପିବେ ଭାଳ
ଉଠି ତଳେ ହେଲ ଠିଆ ।

ହଠେ ଆଶ୍ଲେଷ କର ଭୁଲାଇବେ
ବୋଲି ଶଙ୍କିତ ମନେ,
ଆନ ସ୍ଥାନେ ଗଲ ଚତୁରୀ ନାୟିକା
ତାମ୍ବୂଳ ଆହରଣେ ।

ଆଳାପ ଏଡ଼ିବା ଆଣେ ଆଳିଜନ
ସହିତରେ କହେ କଥା,
ଏସନେ କୋପ ଛପାଇଲ କର
ଷଷ୍ଠ ଉପଚାର ଯଥା ।

( ଅଠେଇଶି )

# ଶିଥିଳ ପ୍ରୀତ

ଘନ ଅଶ୍ଳେଷ
ପାଶେ ମୋତେ ଯେବେ
ଧରି ରଖିଥାଅ ପ୍ରିୟ,
ସେ କାଳେ ସହସା
ତୁମେ କାହିଁ ଶୁଣି
ଅନର ମେଖଳା
ମଣି କ୍ୱଣ ଧ୍ୱନି
ନବଡ଼ ତୁମର ଭୁଜ ବନ୍ଧନ
ଶିଥିଳତ କର ଦଅ ।

କାହା ଆଗେ ଯାଇ କହିବ ଏ କଥା
ଶଠ ପ୍ରିୟ କହିବ କି ?
ଘୃତ ମଧୁମୟ ତୁମର ବଚନେ,
ଛଳନାର ବିଷ ଅଛି ଯା' ଗୋପନେ
ବୁଝାଇ ଯେତେ ନୁହଁ କହିଲେ ପରତେ
ଯିବ ଅବା କେଉଁ ସଖି ?

( [illegible] )

## ମମତା ଡଉଲ

ଜାତ ହେବ ସିନା ସ୍ତନ କଟ ବେଢ
ପହିଲେ ଏ ମୋର ଉରସେ,
ପୃଥକ ହୋଇବ କାନ୍ତ ସେ ଦୁଗ୍ଧ
ତୁମର ବୁକୁର ପରଶେ ।

ଚପଳତା ଭରା ଆଳାପରୁ ମୋର
ସରଳତା କାହିଁ ହଜିବ,
ପ୍ରିୟ ହେ ତୁମର ବାକ୍ୟ ଚାତୁରୀ
ସହିତରେ ଯାହୁଁ ମିଶିବ ।

ଧାତ୍ରୀର ଗଳ ଦେଶ ଶୋଭିବ ଏ
ହସ୍ତ ଲତିକା ମୋହର,
କଣ୍ଠ ତୁମର ଭିଡ଼ୁଥିବ କେବେ
ହେବେନି ପ୍ରିୟ ଦେଲ ପାଶୋର ।

କହ ନିଦାରୁଣ ସକଳ ମମତା
ଛିନ୍ନ କାଟିଲ କପର ?
ଏପରି କି ଆଜି ଏ ପୁର ମାର୍ଗ
ନୁହେ ଚଳପଥ ତୁମର !!

( ଶେଷ )

## ଛଥାଗି

ଶତଧା ଯାଉ ଫାଟି    ଏହୁ ପରାଣ,
ଚିନ୍ତା ନାହିଁ ମୋର    ସଜନୀ ଜାଣ ।

କରବ କୃଶତର    ଏ କ୍ଷୀଣ ତନୁ,
ନିଠୁର ହୋଇ ସେ ତ    କୁସୁମଧନୁ ।

କନ୍ତୁ ସେ ତରଳ-    ପ୍ରେମୀ ଦୟିତେ,
ମୋ ପ୍ରୟୋଜନ ନାହିଁ    ଆଉ ଛଂଛତେ ।

ଏଣୀନୟନା ବେଶେ    ସଖି ଏସନ,
ପ୍ରିୟ  ଆସିବା ପଥେ    ଢ଼ାଳେ ନୟନ ।

( ଏକତାଳି )

# ପ୍ରଗଲ୍‌ଭାର ପ୍ରଶ୍ନ

'ସ୍ୱେଦ କଣା କିଆଁ   ତୋ ବଦନେ ଝଲେ ?'
ଦୂତୀ କୁ ପଚାରେ ସଖୀ,
ଚତୁରୀ କହଇ,   'ଭାନୁକର ଜାଳେ…
ଜାଣି ତମେ ପାରୁ ନ କି !!'
'କି ଲାଗି ଅରୁଣ   ତୋ ବେନି ନେତ୍ର
ଦିଶୁଅଛି ସହଚରୀ ?'
'ଶଠ କଥା ଶୁଣି   ରୋଷେ ଏ ନୟନ
ରକ୍ତିମା ଅଛି ଧରି ।'
'ସୁନୀଳ ଅଳକ   ଉପରି ତୋର ଲୋ
ଏସନ ଆଲୁଳାୟିତ ?'
''ମନ୍ଦ ମରୁତ   ବାର ବାର ବହି
କଲ ଅଳକ ଲେଳିତ ।'
'କୁଙ୍କୁମ ଛଟା   କପୋଳରୁ ତୋହର
ଚିଭଇ ଦେଇଛି କିଏ ?
ଚତୁରୀକା କହେ,   'ଘଷି ହୋଇ ପରା
ଏ ମୋର ଉଭରିଯେ ।'
'ଅଙ୍ଗ ଅବଶ   କ୍ଳାନ୍ତ କିଆଁ ତୁ
ସତ କହୁନୁ କି ମତେ ?'
'ତୋହର ପାଇଁ ଲୋ   ଯାଇ ଆସି ପରା
ତୁ କି ଯାଉ ନାହୁଁ ପ୍ରତେ ?'
'ଚତୁରୀ ଦୂତୀଲୋ   ସବୁ ପ୍ରଶ୍ନର
ଉତ୍ତର ଦେଲୁ ସିନା-
ପଚାରେ, ଅଧରେ   ରକ୍ତିମ କ୍ଷତ
କାର ଚୁମ୍ବନୁ କି ନା ?''

( କତଷି )

# ପ୍ରୀତି-ଜ୍ୱାଳା

ତୁମେ ଦେଇଥିଲ
ସହୀକୁ ମୋହର
ନିବିଡ଼ ପ୍ରଣୟ ତବ,
ପାଇଥିଲ ପ୍ରୀତି
ବହୁକାଳ ଲେପି
ସ୍ନେହ ସୁଧା ସଉରଭ ।
ଆଜି ଶଧି ବଣେ
ନିର୍ମମ ତୁମେ
କଲ ହୀନ ହତାଦର,
ମମତା କାଟିଲ,
ପୀରତି ଚୁଲିଲ
ହେଲ ସେତୁ ସାତପର ।
ଏବେ ଶେଗେ ବାଳା
ପ୍ରାଣେ ପ୍ରୀତି ଜ୍ୱାଳା
ଅସହଣି ତାର ବ୍ୟଥା,
ନିଷ୍ଠୁର ତମେ
ନ କର ପ୍ରୟାସ
କହିବାକୁ ମଧୁ କଥା ।
ମୁକୁଳା କଣ୍ଠେ
ପ୍ରାଣ ସହୁ ମୋର
ବେଦନ କରୁଛି ଆଜି,
ମନା କର ନାଇଁ,
ନୋହିଲେ ତାହାର
ହୃଦୟ ପଡ଼ିବ ଶକି ।

( ତେଙ୍ଗଣି )

# ପ୍ରୀତି ତାଡ଼ନା

କୋପମୟୀ ପ୍ରିୟା ଗୃହୁ ଚଞ୍ଚଳ
କୋମଳ ତା' ଭୁଜଲତାରେ,
ବାନ୍ଧି ଦୟିତେ କେଳି ପୁରେ ଆଣି
ସଜନୀ ସମୀପେ ପଚାରେ-
'ପଡ଼ଣି ତ ମୁର ସେହୁ ଆଚରଣ
ଯାଉନ ହେ ଶଠ ନାଗର...'
କୋମଳ ଲଳତ ବଚନେ ସୂଚାଇ
ହିଆ-ତଳ ପ୍ରୀତି-ଲହର ।

ଦରହାସେ ପ୍ରିୟତମ ମନା କଲେ,
ଲୀଳା ତାମରସେ ସେ ପ୍ରହାର କରେ...
ଧନ୍ୟ ନାୟକ, ନାୟିକାର ଗୁରୁ
ଅଭିମାନ, କେଳି ଭବନେ
ପୀରତି ରସରେ ପରିଣତ ଯେବେ
ହୁଅଇ ସଞ୍ଜ ଲଗନେ ।

( ଚଉଛଇଷ )

## ଝଲଠା ମନ

ଶୁଣ ଲୋ ପ୍ରିୟସହି !
ପ୍ରଣୟ କୋପ ବହି
ହୃଦୟେ ମୋର,

କହିଲି ପ୍ରିୟତମେ
'ଏଠାରୁ ଯାଅ ତମେ···
କରନା କୋଳ ।'

ତହୁଁ ତ ସେ ନାଗର
ତ୍ୟାଗି ଶେଯ ମୋର
ସହସା ଗଲେ,

କାହିଁ ନ ରଖି ଆଶ
ପ୍ରୀତି ମମତା ପାଶ
ତୁଟାଇ ଦେଲେ । .

ସ୍ନେହ ପରାଗ ଦଳ,
ଝଠୁର ଗଲେ ଚଳି···
ତଥାପି କିଆଁ ?

କାନ୍ତେ ଝରତେ ଗୋ
ଏ ପୋଡ଼ା ମନ ଝୁରେ···
ଝୁରଇ ହିଆ !

ଏବେ ମୁଁ କି କହିବ କହିଲେ ମୋତେ,
ଝଇଠା ମନ ମୋର ଏଢ଼ଙ୍କ ପଡେ !!

( ପଞ୍ଚଶରଣ )

# ବାଗ୍ ବନ୍ଧନ

ନବ ଦମ୍ପତ ରତ କେଳ କାଓଳ
କଉତୁକେ କଥା
ହୋଇଥିଲେ ଯାହା
ଘର୍ତ୍ତି କୋଳେ
ପୀରତ ସେଳେ,

ପର ପ୍ରଭାତରେ ସେ ପ୍ରୀତି ବଚନ
ଗୁରୁଜନ ପାଖେ
ଗୃହ ଶୁକ ତାର
କଣ୍ଠେ ତୋଳେ
ଉଚ୍ଚ ସେତେଳେ ।

ହାୟ ଆଲେ ଶୁକ ତୁ କଲ କି କଲ
ବୋଲି ଲଜବତୀ
ନବବଧୂ ମନେ
ନରମି ଗଲା
ସରମି ଗଲା···

କର୍ଣ୍ଣଭୂଷାରୁ ପଦ୍ମରାଗର
ମଣି ନେଇ ଏକ
ଶୁକ ଚଞ୍ଚୁରେ
ତୁଣ୍ଡେ ଦେଇ
ଭୁଲେଇ ଦେଲା ।

( କ୍ରମଶ )

# ପ୍ରୀତି-ଲାଞ୍ଛନ

ତୁମର ହୃଦାଦରେ
ତୁମକୁ କରି ପଛ
ଶଠ ହେ ହୋଇଥିଲ ଠିଆ,

ଏଡ଼କ ଅବିଚାରେ
ଏସନ ଦୁଃଖିନୀରେ
ବହିଲ ଆଶ୍ଳେଷ କିଆଁ ?

ସେ କେଉଁ ଅଙ୍ଗନା
ଅଙ୍ଗ ପରଶରେ
ବକ୍ଷେ ତମେ ଥିଲ ବହି,

ଉରଜ ରଂଜିତ
ଅଙ୍ଗରାଗ ଲେପ
ଅଶେଷ ଅରୁଣିମା ଛବି ।

ପଛରୁ ଆଶ୍ଳେଷି
ମୋହରେ ଶଠ ତୁମେ
ପାଇଲ କହ କେଉଁ ଲଭ ?

ଅରୁଣ ବୁକୁ ପରେ
ଦେଖିଲ ମୋ ବେଣୀର
ମଇଳା ତଇଳର ଦାଗ ।

ତା' ବୁକୁ ସ୍ୱର୍ଗକୁ
କେମନେ ଦେଲ ତୁମେ ଚୂରି ?

ପୀରତି ଲାଞ୍ଛନ !
ତା' ଲାଗି ହେବ ସିନା ଝୁରି !

( ସତଭରଣ )

## ପ୍ରଣୟ ବର୍ତ୍ତମାନ

କଉତୁକେ ମୁଁ ଗୋ
ରହିଲି ମଉନେ
ଜାଣିବାକୁ ପ୍ରିୟା
କେମିତି ଆଚରେ
ମୋ ଭୁଲେ,
''ଶଠ କଆଁ କଥା
କହନ୍ତି ନ ଲେ--
ଏବ ପ୍ରିୟା ମୋର
ଥରୁଥିଲ କୋପ
ଆତୁରେ ।
ମୋର ନୀରବତା
ପ୍ରିୟାର ଏଦଶା
ସୁମରି ମୁଁ ଯେବେ
ଛଳନାର ହସ
ହସଇ,
ଧୂର୍ତ୍ତହସ ମୋର
ପ୍ରିୟା ନୟନର
ତୀରେ ଅବାରିତ
ଲୋତକ ବନ୍ୟା
ଛୁଟଇ ।

( ଅଠଷଠି )

# ପ୍ରୋଷିତ ଭର୍ତ୍ତୃକା

ବାଦଲରେ, କେତେ
        ମଳୟ ମରୁତ
                ମଧୁମାସେ ଗଲା ବହି,
ପ୍ରୀତି-ଶୂନ୍ୟ ମୋ
        ପ୍ରିୟ ପରବାସୁ
                ଲେଉଟିଲେ ନାହିଁ ତହିଁ ।
ଫୁଲ୍ଲ ମଲ୍ଲୀ
        ପରିମଳ ଭରା
                ଗ୍ରୀଷମ ହୋଇଲା ଶେଷ,
ମୋ ନିଠୁର ପ୍ରିୟ
        ତ ଅବା ମନାସି
                ବାହୁଡ଼ ନଇଲେ ଦେଶ ।
ତୁ ଏବେ କାଇଁକ
        ନୀଳ ନଭରେ ରଖି
                ବର୍ଷଣ ସମ୍ଭାର,
ପ୍ରିୟ ଫେରିବାକୁ
        ପ୍ରୟାସ କରୁଚୁ
                ଦେନି ଏହି ଉପଚାର ।
ଧେନୁ-ଧନେ ଯେହ୍ନ
        ଲେଉଟାଇ ଆଣେ
                ଧନଞ୍ଜୟ ତ ସେହ୍ନୁ,
ପ୍ରାଣ ଧନେ ମୋର
        କହରେ ବାଦଲ
                ଫେରାଇ ଆଣିବ କେହ୍ନୁ ?

( ଅଣଚାଲଣ )

# ସ୍ୱଗତୋକ୍ତି

ଦୂର ପରବାସେ
ଯିବାପାଇଁ ଯେବେ
ରହିଲେ ଦମ୍ପତି
ସ୍ଥିର ନିଶ୍ଚିତ ମନେ,
ବାହୁରୁ ମୋହର
ଖସି ଗଲା ଚାଲି
ବଳୟ ଯୁଗଳ-
ପ୍ରିୟ ସଖା ତତକ୍ଷଣେ ।
ପ୍ରୀତି ସଙ୍କେତ
ନୟନୁ ଲୋତକ
ଧାର ଅବିରତ
ଅଜସ୍ର ଗଲା ବହି ।
କଟି ଦୁର୍ବଳ
ହୃଦୟ ଆସନୁ
ଧୃତି ଗଲା ଦୂରେ
ମନ ଆଗେ ଆଗେ କହି ।
ପ୍ରିୟତମ ସଖା
ସୁହୃଦ ଯୋଦରେ
ରହିଲେନି କେହି
ପଡିଁ ଗଲେ ପାଣି ପାଣି ।
ଜୀବନରେ !
ତୋର ଯିବା ତ ସତ୍ୟ
ଛାଡ଼ୁ ତେବେ କିଆଁ
ସୁହୃଦ-ଗମନ-ସାଥୀ ?

# ମାନିନୀ ନେତ୍ର

ଦୂରୁ ଦେଖି ଅପରାଧୀ ପ୍ରିୟତମେ
ମାନିନୀ ନେତ୍ର ବେନି,
ଯେ ପନ୍ଥ ନିରତେ ଚାହିଁ ରହୁଥାଏ
କେତେ ଉତ୍କଣ୍ଠା ଘେନି ।

ଅନାଦରେ ଶବଳିତ ସେ ନୟନ
ପାଖକୁ ଆସିଲେ ପତି,
ମଧୁଭାଷା ଶୁଣି ବିସ୍ଫାରିତ ଗୋ
ଧରୁଥାଏ ନାନା ଗତି ।

ପ୍ରୀତି ଆଶ୍ଳେଷ ପ୍ରିୟତମ ଦେଲେ
ଲୋହିତ ହୁଅଇ ରୋଷେ,
ଭ୍ରୂଲତିକା ତା' କୋପେ କମ୍ପିତା
ବାଧ କାଳ ଟଣା ଦୋଷେ ।

ପ୍ରିୟ ପଦେ ତାର ପ୍ରଣତି ବହିଲେ
ନୟନ ଅଶ୍ରୁ ବିନ୍ଦୁରେ,
କ୍ଷଣକେ ବଦଳେ ମାନିନୀ ନେତ୍ର
ଅଦ୍ଭୁତ ଶୋଭା ଧରେ ।

( ଏକଚକ୍ରଳଣ )

# ମାନିନୀର ଉତ୍ତର

କୋପନା କାନ୍ତାରେ
କହିଲେ ବଲ୍ଲଭ
'ତୁ ଛାଡ଼ ମାନ ତୋର ସଜନୀ'
ମାନିନୀ କହେ 'ନାଥ !
ମୁଁ କଲେ ମାନ ଅବା
ତମର କସ ଯାଏ କହନ ?'

'ତୁମେ କି ବୁଝ ନାଇଁ
ମରମେ ଜାଗେ ଖେଦ'
କହିଲେ ପ୍ରିୟତମ ବୁଝାଇ,
ତରୁଣୀ ଉତ୍ତରେ-
'ତମର ଦୋଷ ନାହିଁ,
ମୋ ଦୋଷେ ତବ ଖେଦ କିପାଇଁ ?'

'ତେବେ କି ଲାଗି ସହି
କାନ୍ଦୁ ତୁହାଇ ତୁ?'
-ଦୟିତ ପଚାରିଲେ ସବେଗେ,
ନାୟିକା କହେ-'କହ
କାନ୍ଦେ କା'ଆଗେ ମୁଁ?'
କହିଲେ ପତି- 'ଏଇ ମୋ ଆଗେ'।

ପଚାରେ ମାନମୟୀ-
'ତୁମର କିଏ ମୁହିଁ ?'
କହିଲେ ପ୍ରିୟ-'ତୁମେ ପ୍ରିୟା ଗୋ'
ମାନିନୀ କହେ-'ପ୍ରିୟା
ନୁହଁଇ ବୋଲି ସିନା
କାନ୍ଦେ ଜାଣୁନାହିଁ କିଆଁ ଗୋ !!'

( କପୂରାଳଣ )

## ଲୋତକ-ବନ୍ୟାରେ

ଶ୍ୟାମଳ ମେଘମାଳା
ଆକାଶେ ରଚେ ଲୀଳା
ଝଡ଼ ଚୁରେ,
ଏ କାଳେ ବାହୁ ପାଶ
ପ୍ରୀତିଳ ଆଶ୍ଳେଷ
କିଏ ନ ଝୁରେ ?
ଧୂର୍ତ୍ତ ପ୍ରିୟତମ
କଉଳ ନର୍ମ ମ
ହୋଇଲେ ଆହା
କା ପ୍ରେମେ ହୋଇ ରତ
ଯିବାକ୍ ଉଦ୍ୟତ
ପ୍ରବାସେ ଯାହା ।
ତରୁଣୀ ବଲ୍ଲଭୀ
ପଷଣେ ତାର ଲଭି
ଦାରୁଣ ବ୍ୟଥା
'ଯାଅନା ପ୍ରିୟ ଛାଡ଼'
ପୟର ତଳେ ପଡ଼
କହେନ କଥା ।
ଦମ୍ପିତ ବାସ କାନ-
ପଣତ କତର ଟାଣି
ଧରନ ବାରେ,
ଦୁଆର ପାଶେ ଯାଇ
ଅଗୁଳା ଦେଲ ନାଇଁ
ଭୁଜ ଲତାରେ ।
କେବଳ ସେ ତରୁଣୀ
ନିଠୁର ଯିବେ ଜାଣି
ମର୍ମାହତ,
ନୟନ ବେନି ତୀରେ
ଲୋତକ ବନ୍ୟାରେ
ଖୋଳିଲ ପଥ ।

( ତେୟାଳିଶ )

# ପ୍ରୀତିର ଗନ୍ଧ

ପ୍ରଥମ ପ୍ରଣୟର ଅଭୁଲ ପ୍ରୀତି
କହ ତ କେବେ ଭୁଲ
ହୁଅଇ ମନୁ ?

ସେ କାଳେ ଭୁଲ ଯାହା ସରମ ଭୀତି
ମିଶାଇ ଥିଲେ ଆମ
ଏ ବେନିତନୁ ।

ତା' ପରେ ତମେ ହେଲ ନାହିଁ ମୋ ପ୍ରିୟ
ମୁଁ ପ୍ରିୟତମା ନୁହେଁ
ଭାଗ୍ୟ ହୀନା,

ଭର୍ତ୍ତା ହୋଇ ଏବେ ଭକତ ନିଅ
ଭାର୍ଯ୍ୟା ଆଜି ଆମେ
ସଭିଏଁ ସିନା !!

ଏବେ ତ ତୁମେ ବହୁ ନାୟିକା ପତି-
ତଥାପି ଅଛି ପ୍ରାଣ
ମୋ ହରି ଆହା !

କୁଳଶ ସମ ଟାଣ ହୃଦୟ ଅତି
ଫଳ ଯାତନା ଭୋଗ-
ସେ ଲାଗି ଯାହା ।

( ଚଉସଳଣ )

# ପ୍ରେମର ପରିଣତି

ସରଳା ବାଳାରେ,
ପ୍ରେମ ପରିଣତି
ବିଚାର କଲ ନି ମନେ,

ସଖୀଜନ ବାଣୀ
କାନରେ ନ ଶୁଣି
ମାନ କଲ ଅକାରଣେ ।

ପ୍ରଳୟ କାଳର
ଜଳନ୍ତା ନିଆଁ
ଏବେ ତୁହି ହାତେ ଧରି,

ଦାବ ଦହନର
ଦାରୁଣ ଯାତନା
ଭୋଗୁଅଛ କେଉଁ ପରି ?

ଭବ ଆଉ ଅବା
ଅଛି କେଉଁ ପ୍ରୟୋଜନ,
ଏବେ ତୋର ସିନା
ଅରଣ୍ୟକ୍ରନ୍ଦନ ।

( ପଦ୍ମଁ ଗୁଣ୍ଡିଆ )

# ମାନିନୀର ଚିନ୍ତା

ସଜନୀଲୋ ଶଠ ନାଗର ରୀତିକି
ସୁମରି ଅନ୍ତରେ ମୋର,
ଅସହଣି ହୋଇ ଅବଚଳ ରହି
ରଖିଅଛି ମାନ ଘୋର ।

ଏ ମୋର ବଦନେ ପ୍ରୀତିରସ ଘନେ
ଝଳ ନାହିଁ ସ୍ୱେଦ କଣା,
ଅଙ୍ଗ ତଟରେ ସଲଜେ ମଧୁରେ
ପୁଲକ ହୋଇନି ଜଣା ।

ମନର ହରଷ ପ୍ରୀତିର ଆବେଗ
ଆଉତ ପରଶେ ନାହିଁ,
ଏ ମୋର ଉଚ୍ଚ କୁଚ କମ୍ପିତ
ହେବ ଅବା କାହିଁ ପାଇଁ !!

ତଥାପି ଅଟଳ କେସନେ ରହିବ
ଆଜ ରଜନୀରେ ସହି,
ଧୂର୍ତ୍ତ ଦୟିତ ପଦେ ପ୍ରଣମିଲେ
ପୀରତି ବଚନ କହି ।

ସେ ତ ସୁଚତୁର ପ୍ରୀତି-ତସ୍କର
ହରି ନେବେ ମୋର ମନ,
ପ୍ରେମ ଚାହାଣୀର ପୀରତି ଅନଳେ
ଜାଳିବେ ହୃଦୟ-ବନ ।

( ଛନ୍ଦ୍ରାଳଣ )

## ସିଦ୍ଧି କାହିଁ ?

ମାନମୟୀ ନାରୀ          ଯେସନେ ଗୋ ତାର
ଭ୍ରୂକୁ କୁଞ୍ଚନ କରେ,
ଯେସନେ ସେହି ତା          ନେତ୍ର ଯୁଗଳ
ମୁଦ ଦଏ କଉଶଳେ ।

ସବୁ ତ ଶିଖିଲି,          ଶିଖିଲି ଯେସନେ
ରୁଦ୍ଧ କରେ ସେ ହାସ,
ଯେସନେ ମଉନ          ରହଇ ସେହି ଗୋ
ହୃଦେ କଲି ଅଭ୍ୟାସ ।

ସଖି ଲୋ ଶିଖିଲି          ମାନର ସକଳ
କଳା କଉଶଳ ସଜି,
ଦମ୍ଭ ଧରନ୍ତି          ଚାଉ ରଖିନ୍ତି
ଅବଚଳ ମୋର ଆଜି-

କହିବାକୁ ସିନା          ପ୍ରିୟତମ ତୁଲେ
ଅଜେୟ ଅଟଳ ମାନ,
ସାଧନା ମୋହର,          କିନ୍ତୁ ସିଦ୍ଧି-
ଦେବତା ଅଧୀନ ଜାଣ ।

( ସତ୍ୟଭାମା )

# ରସପାନ

ଯୁବା ଯୁବତୀ ବେନି
କାମ ପିପାସାତୁରେ
ପାଖକୁ ଆସି,

ମଦନ ରସନଦୀ
ପ୍ରବାହେ ସେ ଗୋ ଯେବେ
ଯା'ନ୍ତି ଝର୍ସ-

ଏ କାଳେ ଗୁରୁଜନ
ସହସା ସେତୁ ସମ
ମଣ୍ଡିଲେ ତହିଁ,

ସେ ପ୍ରୀତି ରସ ଧାର
ହୁଅଇ ପ୍ରତିହତ
ମର୍ମ ଦହି ।

ହାୟ ସେ ଯୁଗଳର
ନ ପୂରେ ମନୋରଥ
ନିକଟେ ଥାଇ,

ଛବି ପିତୁଳା ପରି
ହୋଇଲେ ଠିଆ ଏକୁ
ଆରେକେ ଚାହିଁ ।

କେବଳ ସେ ନୟନ-
ନଳିନୀ-ନାଳେ ଯାହା
ପୀରତି ରସ,

ପିଇଲେ ପ୍ରାଣାତୁରେ
ଅଧୀରେ ହୋଇ ସେହି
ସମସ୍ତ ଦଣ୍ଡ ।



# କନ୍ଦର୍ପ ଅଶିଷ

ପ୍ରୀତ ଅପରାଧୀ
ଦୟିତରେ ଯେଉଁ
କାମ ମଦାଳସୀ ନାୟିକା

ନୂପୁର ରଣିତ
ଅଳତା-ଶୋଭିତ
ପଲ୍ଲବ-ମୃଦୁ ପଦ୍ମରେ,

ପ୍ରୀତ କୋପ ଭରେ
କରଇ ତାଡ଼ନା
ସେହି ତ ଯେ ପ୍ରୀତି-ଦାୟିକା

ଏ ଦୟିତ ରତି-
ପତି କାମଦେବ
ଆଶିଷ ଲଭଇ ସତରେ ।

( ଅମରୁକ )

# ମଧୁ ମଳୟ

ସ୍ୱେଦ-କଣିକା ଭରା
ରମଣୀ ରମଣୀୟ-
ଶଶି ବଦନେ,

ଚୂନା ଅଳକ କେଶ
କଳତେ କମ୍ପିତ
କଉ କେସନେ,

ତରୁଣୀ ନତମ୍ବ-
ବସନ ଛୁଇଁ ଛୁଇଁ
ରଚଇ କ୍ରୀଡ଼ା,

ଅଙ୍ଗ ତନ୍ଦ୍ର ହର
ରଜନୀ କାଳ ତାର
ସୁରତ ପୀଡ଼ା

ଲୁଣ୍ଠର ବକସିତ
ପଦ୍ମ-ରେଣୁ ବହି
ପ୍ରସବ କାଳେ,

ମଳୟାନିଳ ବହେ
ମଧୁରେ ମଧୁମାସେ
ପୀରତ ତାଳେ ।

## ନିଦାଘ ସଂଜେ

ବାସ ବସନେ
ଚର୍ଚ୍ଚିତା ଚାରୁ
ତରୁଣୀ ଅଙ୍ଗ
ଶିରୀ ଶୋଭେ ଧବଳିମା

ତାମ୍ବୂଳ ବୋଳେ
କିଶଳୟ ସମ
ରକ୍ତିମା ଆଭ
କୋମଳ ଅଧର ସୀମା !

ଧାରାଗୃହ ଜଳ-
ସ୍ନାନେ ଅରୁଣିମା
ନୟନ ଯୁଗଳ
ଅଞ୍ଜନ କଳା ଧୋଇ,

ଆର୍ଦ୍ର କବରୀ
କୋଳେ ସୁରଭିତ
କୁସୁମ ସ୍ତବକ
ମଞ୍ଜୁଳେ ଅଛି ଶୋଭି ।

କ୍ଷୀଣ ନିର୍ମଳ-
ବାସେ ତନୁଲତା
ଅବୋଢ଼ ଯୋଷାଏ
ଦଶନ୍ତ ରମଣୀୟା,

ଘୋର ଗିରୀଷମ
କାଳେ ଧରାପରେ
ଯେବେ ତ ସଞ୍ଜ
ଆସେ ହୋଇ ବରଣୀୟା ।

( ଏକାବ୍ରନ )

## ପାନ୍ଥ-ପ୍ରିୟା

ଅଚାନକ ଦିନେ
ଅର୍ଦ୍ଧ ନିଶୀଥେ
ବଧୂର ପାନ୍ଥ ପ୍ରିୟା,
ନୂଆ ମେଘ ଗୁରୁ-
ଗରଜନ ଶୁଣି
ଚମକି ଉଠିଲା କିଆଁ !
ଶିଥିଳ ହୋଇଲା
ତନୁଲତା ତାର
ଢଳିପଡୁ ଧରଣୀ ପରେ,
ଖସି ଖସି ପଡୁ
ପବନ ସଖି ଏ
ତୋଳି ଧରି ନେଲେ କରେ ।

ହୃଦୟ ଆବେଗେ
ପଦେ ପଦେ ସେ ଗୋ
ନରମେ କହିଲା କଥା,
ପ୍ରିୟ ପଥ ରତ
ପ୍ରୀତି କଥା ସ୍ୱର
ମରମେ ଭରିଲା ବ୍ୟଥା ।
ଉଛେ ଅଧୀରେ
କ୍ରନ୍ଦନ କଲା
ଫଟାଇ ହୃଦୟ-ବେଣୁ,
ସ୍ତନ ପଟର ଖସି
ମୌକ୍ତିକ ବିନ୍ଦୁ
ହୋଇ ଯାଉଥିଲା ରେଣୁ ।

( କାଞ୍ଚନ )

# ଅଧର୍-ମଦ୍ୟ

ପୀରତ ପିଆସା
ଆକୁଳେ ଯେ ଧନ୍ଁ
ହୋଇ ମନ୍ମଥ-ବଶ,
ମଦ୍ଧା ସଖ ଲଭି
ପିଇଲ ପ୍ରିୟାର
ଅଧର ମଦ୍ୟ-ରସ ।

ସେଇ ଧନ୍ ସଖା
ପ୍ରାଣର ପିପାସା
ଅଧିକୁ ଅଧିକ ହୁଏ,
ଯେତେ କଲେ ପାନ
କଣ୍ଠ ସମାନ
ମେଣ୍ଟିବା କଥା ନୁହେଁ ।

ହୃଦୟେ ଅନଳ
ଜଳଇ ପ୍ରବଳ
ପ୍ରୀତି ରତେ ଦୁର୍ବାର,
ଧନ୍ୟ ହେ ସଖା
ପ୍ରୀତି-ମଧୁ-ମଖା
ଲଳିତ ଅଧର ତାର !!

( ଦେପନ )

# ଡର କାହାକୁ ?

'ଘନ ଅନ୍ଧାରେ
ଅର୍ଦ୍ଧ ନିଶୀଥେ
କରସ୍ପେରୁ ପନ୍ଥ ମୋର,
ଯାଉଛୁ ଲେ କାହିଁ
ନିଜ ଜୀବନକୁ
ଟିକେ ଭୀତ ନାହିଁ ତୋର ?'

-ପଚାରିଲେ ସଖି,
ଅଭିସାରିକା ସେ
ଉତ୍ତର ଦିଏ ତହିଁ,

'ଯାଉଛି ସେଠାକୁ
ପ୍ରାଣୁ ବଳି ପ୍ରିୟ-
ତମ ଛ'ନ୍ତି ଗୋ ଯହିଁ ।'

'ଏକାକିନୀ ତୁ ଲେ
ଡର ନାହିଁ ଲଗେ ତୋତେ ?'

'ଡର କାହାକୁ ଲେ ?'
'ପୁଷ୍ପ-ଶାୟକ
ରତି-ପତି ଯାହା ମୋତେ ।'

( ଚଉବନ )

## କପଟ ନିଦ

ସୁରସବତୀ ପ୍ରିୟା
    ନିରେଖି କେହି ନାହିଁ ତା କେଳିଘରେ,
ଶୟିତ ପତି ମୁଖେ
    ଚାହିଁଲ ଅପଲକେ ପ୍ରଣୟାତୁରେ ।
ନଭୟେ କଉତୁକେ
    ତଳପୁ ତୋଳି ଧୀରେ ତା'ଙ୍କ ମୁଖ
ନିଦ୍ରାଗତ ପତି-
    ବଦନ ସୁଧା ପିଇ ଲଭିଲ ସୁଖ ।
ସେତିକ   ନୁହେଁ ସେ ଗୋ
    ପତି ଅଧର ତଟେ ଚୁମ୍ବ ଦେଉ,
କପୋଳେ ଦେଖେ ଜାତ
    କେସନେ ଅବାରିତ ପୁଲକ ଢେଉ ।
କପଟ ନିଦ୍ରାରେ
    ଝଲସି ଥିଲେ ପତି ଜାଣି ତରୁଣୀ
ସରମେ ଝାଉଁଳା
    ବଦନ ନୁଆଁଇଲା ତଳକୁ ପୁଣି ।
ଚତୁର କେଳିପ୍ରିୟ
    ଅଳପ ହସି ତୋଳି ପ୍ରେୟସୀ ମୁଖ,
ନିବିଡ଼େ ଦେଇ ଚୁମା
    ବଧୂର ଓଠେ କେତେ ଲଭିଲେ ସୁଖ ।

( ପଞ୍ଚାନନ )

ହେଉ...

ହେଉ ପଙ୍କଜ ଜଣା
ବୃଥା ଅଳାପ ତମ
ଏଠାରୁ ଯାଅ ପ୍ରିୟ ଏଥର,

ହୃତସଗିନୀ ପ୍ରୀତ
ବିଶ୍ୱ ସମ୍ମୁଖ ହେଲେ
ଧରିବ କିଆଁ ଦୋଷ ତମର ।

ଏମନ ଗାଢ଼ ପ୍ରୀତ
ଭଜେ ଯଦି ଏ ରୀତ
ସ୍ୱପନ ତରଳ ଏ ଜୀବନ,

ଯଦି ବା ଯା ଏ ଭୂଲ
ଏ ମାଟି ଦେହ ଛାଡ଼ି
ବ୍ୟଥିତ କିଆଁ ହେବ ଏ ମନ ?

( ଲୁପନ )

# ସହଜ ପ୍ରୀତି

ଦୋଷୀ ପ୍ରିୟ ପାଶେ
ପ୍ରୀତି-ମାନ-କଥା
କହିବା ପାଇଁ,
ଚତୁରୀ ସଜନୀ
ଜନକରେ ଗୋ ଯାହା
ଥିଲେ ଶିଖାଇ
ଯେତକ ତଭଟେ
କହିଟେସ ନବୀନା
ଦୟିତ ଆଗେ,
ରଞ୍ଜ କଲ ମନ-
ସିଜ ଯେଉଁ ସବ
ମାନସେ ଜାଗେ ।
ସେ ତନୁ ପାଟଳୀ
ନବଛଇଳାର
ଭୂଷଣ ସମ
ଏସନ ସହଜ
ସ୍ୱଭବ ପୀରତି
କି ମନୋରମ !!

## ଅସୀମ ଦୂରେ...

ଶତ ଶତ ଦେଶ
ଦୂର ବ୍ୟବଧାନେ
ରହୁଛି ପ୍ରିୟା,
ତା' ମଝିରେ ଶତ
ପର୍ବତ ବନାନୀ
ଶଇଳ ଠିଆ ।

ସେ ପ୍ରିୟାର ମୁଖ
ଦରଶନ ଆଶା
ସିନା ଅଳୀକ,
ଜାଣି ଜାଣି ସେହୁ
ଶରଦ୍ଧ ବଧୁର
ପ୍ରିୟ ପଥିକ ।

ନୟନୁ ଲୋତକ
ପୋଛିଲା, ମରମେ
ବନ୍ଧ ବୋଁ,
ବସୁଧାରେ ଅଧା
ପାଦେ ହୋଇ ଠିଆ
ଡୋଳ ତା ଗ୍ରୀବା,

ବାର ବାର ଚହେଁ
ଆକୁଳ ନୟନେ
ଶରଦ୍ଧାତୁରେ,
ଯେ ଦଗେ ରହୁଛି
ପ୍ରାଣ ପ୍ରିୟା ତାର
ଅସୀମ ଦୂରେ ।

# କେଳି କୌତୁକ

ତରୁଣୀ ପ୍ରସାଧନ ମାଳା ଚନ୍ଦନ
ହାର ମେଖଳା ଆଦି ଅଙ୍ଗ ଭୂଷଣ,
କେଳି ସଦନେ ଖସି ଲୋଟଇ ତଳେ
ଅଶେଷ ରସମୟ ରତ ସମରେ ।

ବାଳା ବସନ ନିଧୁବନ ଅନ୍ତରେ,
ଲୁଚାନ୍ତେ ପ୍ରିୟତମ କଉତୁକରେ···
ଝାଉଁଳ ଗଲା ଲାଜ ସରମେ ସେହୁ,
ଉଚ୍ଛୁର କଲେ ଯେବେ ବସନ ଦେଉ-

କରୁଣେ ସେ ତରୁଣୀ କରେ ମିନତି,
ବସନ ମୋର କାହିଁ ନ ଦିଅ ପତି ?
ସରମେ ମରିଯାଏ ଦେଖିଚ ପ୍ରିୟ,
ଦିଅଗୋ ମୋର ପିନ୍ଧା ବସନ ଦିଅ ।
ସବୁତ ନେଲ ଲୁଟି, ସରମ ଆଉ
କାହିଁକି ହଟହଟା କରୁଛ ଆଉ ?

ମିନତି ଶୁଣି ତାର ଭୁବନ ଜୟୀ
ରତି-ପତି କନ୍ଦର୍ପ ମିଳିଲେ ତହିଁ,
କାମ ସମର ସାଥେ କେଳି ଛାଉଣୀ
ଉଠାଇ ନେଇଥିଲେ-ସେହି ତ ପୁଣି,
ବାଳା ବିପଦ ଦେଖି ହୋଇଲେ ଠିଆ
ଲଗାଇ ପତି ପ୍ରାଣେ ପ୍ରୀତିର ନିଆଁ ।

# ଦୁଇ ନା ଏକ ?

ନବ ତରୁଣୀ ଲଭି     ବଲ୍ଲଭ ସଙ୍ଗ,
ନବଢ଼ ରତି ରସେ     ଜଡ଼ିଲ ଅଙ୍ଗ ।
ପିନ୍ଧା ବସନ ତାର     ଖୋଲିଲ ତଳେ,
ଲଳିତ କାମ କଳା     ଖେଳିଲ ରସରେ ।

ନିଧୁବନ ଅନ୍ତେ ସେ     ନିଜ ବସନ,
ଖୋଜି ପିନ୍ଧିବା ଲାଗି     କରେ ଯତନ ।
ଅତି ଶିଥିଳ ଭୁଜ-     ଲତା ତାହାର,
ତନୁ ବସନ ତାର     ଖୋଜି ନ ପାଇ-

ବିଚାରି ଲାଜେ ମରେ     ନବୀନା ବଧୂ
ପ୍ରିୟ ନୟନ ସେବେ     ପିଅଇ ମଧୁ ।
ସଲଜ୍ଜେ ଆଲିଙ୍ଗନ     କଲା ଦୟିତେ
ତନୁ ମିଶିଲ ପ୍ରିୟ     ତନୁ ସହିତେ ।

# ପୁଷ୍ପବତୀର ମନା

କୁସୁମବତୀ ହୋଇ     ତରୁଣୀ ପ୍ରିୟା,
ତଳପ ତେଜି ଦୂରେ     ହୋଇଲା ଠିଆ ।

ନ ପାଇ ବୁଝି ପ୍ରିୟ     ହୃଦ୍‌ବୋଧରେ,
ଭ୍ରୂକୁ ଇଙ୍ଗିତେ ବନ୍ଧୁ     ପ୍ରାର୍ଥନା କଲେ ।

ହାସ ଶୋଭିତ ଗଣ୍ଡ     ମୁଖ ମଣ୍ଡଳେ
ଆଚ୍ଛାଦ ପ୍ରିୟା ତାର     ବସନାଞ୍ଚଳେ,

କାନ୍ତେ କରନ୍ତେ ମନା     ହଲଇ ଶିର,
ଧୀରେ ଦୋଳଇ କର୍ଣ୍ଣ-     ଭୂଷାରୁଚିର ।

# ସ୍ମୃତି ଓ ସ୍ମୃତି

ସଜନି ! ପ୍ରିୟ ଯେବେ
ମୋ ଶେଯେ ଆସି,
ଛୁଇଁଲେ ଅଙ୍ଗ ମଧୁ-
ବଚନ ଭାଷି,
ଆପେ ଖସିଲା ମୋର
ନୀବୀ ବନ୍ଧନ,
ମେଖଳା ଗୁଣେ ଲାଖି
ରହି ବସନ ।
ମାତ୍ର ନିତମ୍ବ ପରେ
ଥିଲା କମ୍ପିତ,
ଏତିକି ଯାହା ମୋର
ମନେ ଅଛିତ ।
ତା'ପରେ ଯେବେ ଭୁଜ
ବଳୟେ ରହି,
ନିବିଡ ଆଶ୍ଲେଷ ଗୋ
ଲଭିଲି ସହି ।
ହଜିତ ଗଲା ମୋର
ଜ୍ଞାନ ଶକତି
ଜାଣିନି ମୁଁ କଏସେ
ଅବା କେ ପତି ।
କେସନେ ରତି କେଳି
ହେଲା ଆମରି,
କାହିଁ ତ ଭଳେ ପାରୁ-
ନାହିଁ ସୁମରି !!

## ଶଠ ପ୍ରିୟ

କି କଉତୁକ କଥା ଶୁଣ ଲୋ ସହି
ସ୍ୱଳ୍ପିତ ଦୋଷେ ସନ୍ଧ୍ୟେ ମୁଁ କୋପ ବହି,
ବାରଣ କଲି ସଣ ଟୋକାଇ ମୋର
ନିଶୀଥେ ଆସିବାକୁ ଏ କେଳି ପୁର

ତହୁଁ ସେ ଛଳେ ଫେରି ପାଶୁଁ ମୋ ହରି
କପଟେ ମୋ ସଖୀର ବେଶକୁ ଧରି,
ସଂଜ ଗଗନେ ଆସି ହୋଇଲେ ଠିଆ
ମୋ ପାଶେ, ସେ କଥା ମୁଁ ଜାଣନ୍ତି କିଆଁ?

ଭରମେ ସହି ବୋଲି କଲି ଆଶ୍ଳେଷ,
କହିଲି ତାରେ କାନ୍ତ କଥା ଅଶେଷ ।
ଦେଲି ମୁଁ ମୁକୁଳାଇ ମରମ ଭାଷା
ବସିଲି ପଚାରି ଗୋ ପ୍ରାଣର ଆଶା,
'କହ ଲୋ କହ ସହି ଆଜ ରଜନୀ
ପୁରବ ପଣ ତୁଲେ କି ହେବନି ?'

କହିଲେ ହସି ସେହୁ ଶୁଣି ଏସନ
'ଦୁର୍ଲ୍ଲଭ ସଖୀ ତୋର ପ୍ରିୟ ମିଳନ'
ତା'ପରେ ସଜନୀ ଲୋ ସେ ଧୂର୍ତ୍ତ ବଳେ
ଅଶେଷ ଛଳେ ମତେ ଅଶ୍ଳେଷ କଲେ ।

ଦେଖିଲୁ ସହି ଶଠ ପ୍ରିୟ କେସନେ,
କପଟେ ପ୍ରତାରଣା କଲେ ଗୋପନେ ।

( ଦେଶଠି )

## ବିପରୀତେ

ଏ ଅଙ୍ଗେ ମୋର ପିନ୍ଧାବାସ ନ ରଖି,
ବିପରୀତ ସରତେ ମଜ୍ଜିଲ ସଖି ।

କେଳି କଳାପ ଶେଷେ ଲଜ ସରମେ,
ପଟ୍ଟ ବସନ ପିନ୍ଧି ଦେଲ ଭରମେ,

ସେହୁ ମୋହର ଶାଢ଼ୀ ଜଡ଼ାଇ ଅଙ୍ଗେ,
ଚଟୁ ଆଳାପ କଲେ କେତେ ମୋ ସଙ୍ଗେ ।

କହିଲେ ପ୍ରୀତିଭରେ- 'ଏ ବେଶ ସହି',
ଭଲ ମାନୁଛି ତତେ-' ଭୁଲ ନ ହୁଇ ।

# ରତିକ୍ଳାନ୍ତା

ସୁରତ ଅନ୍ତେ କାନ୍ତା ମୁଖ ମଣ୍ଡଳେ,
ଶମର୍ଦ୍ଧ-ଖେଦ ସ୍ୱେଦ କଣିକା ଝଳେ ।

ପାଣ୍ଡୁର ମୁଖ କାନ୍ତ ବେନି ନୟନ,
ଅଳପ ନିମୀଳିତ ଅତି ଶୋଭନ

ରତି କ୍ଳାନ୍ତା ସେ କାନ୍ତା ମୁଖ ସୁନ୍ଦର,
ହୃଦୟ ! ନ ଫାଟି ତୁ ଅଛୁ କପର ?

( ପଞ୍ଚଷଠୀ )

# ଯାଉ ଏ ମାନ !

ପ୍ରଣୟ କୋପେ ଆଡ଼ କରୁ ବଦନ
ପଡୁଥିବ ଶେଯେ ମାନିନୀ ବାଳା,
କପଟେ ନିମୀଳିତ ବେନ ନୟନ,
ପବନେ ସେ ଗୁଣୁଥିବ ପୀରତ ଜ୍ୱାଳା ।

ଜେଳ ଚତୁର କାନ୍ତ ଶଙ୍କିତ ମନେ,
ନିଜର ଅଙ୍ଗ ତ ଟୁଲ ମାନିନୀ ଅଙ୍ଗ,
ଘନ ଆଶ୍ଳେଷ ବାନ୍ଧି ରଖି ଯତନେ,
ଛୁଅନ୍ତେ ଧୀରେ ଧୀରେ ତା' ନୀବୀବନ୍ଧ ।

ରତ ପ୍ରବୀଣା ମାନମୟୀ ଅଧୀରେ,
ଅନ୍ତର କଷି କଟୀ କମ୍ପନ କରୁ
ଶିଥିଳ କଲ ତାର ନୀବୀ ଗ୍ରନ୍ଥିରେ
ମାନସ୍ତ ପ୍ରୀତି-କୋପ ପଡ଼ିଲ ଝରୁ ।

## କାମ-ମୋହିତ

ମଦନ ମଦ ମତ୍ତା ପ୍ରମଦା ବିପରୀତ
ରତି ସୁଖରେ,
ନଜକୁ ଭୁଲି ସେହି ଥିଲା ଗୋ ତାର ପ୍ରିୟ
ଜଘନ ପରେ ।
ସୁରତ ଶ୍ରେଷେ ସେପ୍ନ କେତେବେଳେ ତେଜି
ପୁରୁଷ ଭାବ,
ନିବିଡ଼ ଉରୁ ବନ୍ଧୁ ମୁକତ କଲା ଯେବେ
ପ୍ରିୟ ବଲ୍ଲଭ ।
ଜାଣିଲା କାମ ଶରେ ଥିଲା ଆକୁଳ କେତେ
ତାର ମରମ,
ଢେକିଲା କେସନେ ସେ ନାରୀ ସୁଲଭ ତାର
ଲାଜ ସରମ ।
ପୁରୁଷାୟିତ କେଳି କଳାପ ଯେତେ ରୁଣୁ
ଝୁଣୁ ନିକ୍ୱଣେ,
ନୂପୁର ଯୁଗଳ ତା' ଜଣାଇ ଦେଇ ଅନ୍ତ
ଆତ୍ମୀୟ ଜନେ ।
ପାଇଲା ଲାଜେ ପୀଡା ପ୍ରିୟା ସେ ରତି କଥା
କରି ସ୍ମରଣ,
କାମ ମୋହିତ ହେଲେ ହୁଡ଼ନ୍ତି ନର ନାରୀ
ଜାଡ ଲକ୍ଷଣ ।

( ଶତଷଠୀ )

## ନୂଆ ଶଇଳୀ

ତରୁଣୀ ତନୁ ବାସ
ମୁକୁଳା କଲେ ବଳେ
କଳଙ୍କ କରେନି ସେ
ପୁ ରୁବ ପକ୍ଷ,
ବଙ୍କ ଭ୍ରୂଲତାବତୀ
ପ୍ରିୟ ଅଧର ତୀରେ
ଚୁମ୍ବନା ଟାଣିଲେ ତା'
ସ୍ୱଚ୍ଛ କବରୀ ।
ଦୃଢେ ଆଶ୍ଳେଷ କଲେ
ଅସଜି ନୋହୁ ଢଳେ
ସହଜେ ଅରପଇ
ତନୁ ଛଇଳୀ,
ମାନିନୀ ସୁଚତୁରୀ
ଶିଖିଲ ସତେ ଏବେ
କୋପ ପ୍ରକାଶ ପାଇଁ
ନୂଆ ଶଇଳୀ !!

# ପ୍ରିୟତମ

ମୁଁ କଲେ ଅଭିମାନ    ସେ ମାନ ଫଳେ,
ପଡ ଲୋଟି ଯିବେ ମୋର    ଚରଣ ତଳେ ।

ଲୋତକ ଭରା ନେତ୍ରେ    ବିନମ୍ର ବାଣୀ
କହିବେ କେତେ ଚାଟୁ-    କର କାହାଣୀ ।

କ୍ଷଣ ଅନ୍ତରେ ଦେବେ    ଗାଢ଼ ଆଶ୍ଳେଷ,
ଗଣ୍ଡେ ବହିବେ କାନ୍ତ    ଚୁମ୍ବ ଅଶେଷ ।

ମାନର ଏ ସକଳ    ଫଳ ଜାଣଇ,
ତଥାପି ମାନ ଲାଗି    କ୍ଷମ ନ ହୁଅଇ ।

କହିଲେ ଯେତେ ସହି    କରିବ ବଶ,
ମୋ ପାଶେ ପ୍ରିୟ ଅଟ    ମୋ ପ୍ରାଣ ଈଶ ।

( କସ୍ତୁରୀ )

# ଅନୁଶୋଚନା

ଚରଣ ତଳେ ଲୋଟି ସେ ପ୍ରାଣ ଧନ,
କହିଲେ ସବିନୟେ ପ୍ରୀତି ବଚନ ।
କି ହୀନମାନେ ତାଙ୍କୁ ଦେଲି ଫେରାଇ,
ଏ ଅବିଚାର କର୍ମ କଲେ କିମ୍ପାଇଁ ?

ଏବେ ବିରହାତୁରେ ନାସା ପବନ,
ଦହନ କରଇ ଗୋ ମୋର ବଦନ ।
ଭରସା ବିନା ହୃଦ ହୁଏ ଅଧୀର,
ଭାବନା କରି ସଦା ଚିତ ଅଥିର ।
ସଜନୀ ନିଦ ନାହିଁ ନୟନେ ଆଉ,
ସେ ପ୍ରିୟ ଦରଶନ ପାଇବି କାହିଁ ?
ଦିବା ରଜନୀ ନେତ୍ର ଲୋତକ ଧାରେ,
କ୍ଷୀଣ ଲଭଇ ତନୁ- ଲତା ଦୁଃଖରେ ।

ରଖିଲେ ମାନ ଆମେ କି ଗୁଣ ବନ୍ଧୁ,
କି ଲାଭ ହେଲା ଅବା କହ ଲୋ ସହି ?

( ସଡୁରୀ )

# ଅସହନା

ପତି ଆନ ପ୍ରୀତିଶୀଳା ପଦେ ଲେଟି
ବହୁ ହୃଦେ ଅନୁରାଗ,
ଲଲାଟ ପଟରେ ବହୁଛନ୍ତି ସେତ
ଅରୁଣ ଅଳତା ଦାଗ ।

ସେ ବଲ୍ଲଭୀ ଘନ ଆଲିଙ୍ଗନ ଫଳେ
କଣ୍ଠରେ କେୟୂର ଚିହ୍ନ,
ତା' ନୟନ ତୀରେ ଚୁମ୍ବା ଦେଇ ଦେଇ
ମୁଖ କଜଳେ ମଳିନ ।

ରତି ଶୀଳା ପ୍ରୀତି ଖେଳେ ପ୍ରିୟତମ
ନୟନେ ଦେଇଛି ଚୁମ୍ବା,
ପ୍ରୀତିର ସନ୍ତକ ନାଗବଲ୍ଲୀ ରାଗେ
ନେତ୍ର ସୀମା ଅରୁଣିମା ।

ଶଠ ପ୍ରିୟ ଅଙ୍ଗ ତଟେ ରତି ଦାଗ
ପ୍ରକଟେ ନିରେଖି ପ୍ରିୟା,
କାମ କୋପେ ଧୀରା ଅଧୀରା ହୋଇଲା
ହୃଦୟେ ଜଳିଲା ନିଆଁ ।

ଲୀଳା ତାମରସ ବାସ ସେବୁଥିଲା
ତହିଁରେ ନିଶ୍ୱାସ ଭରି,
ନିମିଷକେ ମୋହ ହୋଇଲା ମୃଗାକ୍ଷୀ
ପତିଙ୍କର ପ୍ରୀତି ସ୍ମରି ।

( ଏକପ୍ତୁରୀ )

# ଅନ୍ତର୍ବ୍ୟଥା

ପତିଙ୍କ ପୀରତି
ଯାଇଛି ତୁଟି ଲୋ
ପ୍ରଣୟ ପଡ଼ିଛି ଝରି,

ସ୍ନେହ ଅନୁରାଗ
ମଧୁର ବଚନ
ନାହିଁ ଆଉ ଆଗ ପରି ।

ଆନ ଜନ ଭଳି
ହୃଦୟେ ପତି ମୋ
ଉଦାସୀନ ଭାବ ବହି,

ମୋ ଆଗେ କେସନେ
ଯାଆନ୍ତି ଏବେ ଲୋ
ଦେଖୁଛୁନି ପ୍ରିୟ ସହି ।

ଦେଖି ଦେଖି ଏଇ
ରୀତି ତାଙ୍କର ଲୋ
ଗତ ଦିନ କଥା ସ୍ମରି,

ପାରୁ ନାହିଁ ଜାଣି
ନ ଫାଟି ଏ ଛାତି
ରହିଅଛି କେଉଁ ପରି !

( ବାସ୍ତବ )

# ପାଶେ ଓ ପ୍ରବାସେ

ପ୍ରବାସ କାଳେ ମୋର
ମଉଳ ଯାଏ ପ୍ରିୟା
କୁସୁମ ଭଳ,
ପାଣ୍ଡୁ ଦିଶଇ ଦେହ
ଭଷା ଶିଶିର ପ୍ରାୟ
ତୁଟଇ ବଳ ।
ଅଶନ ତେଜ କୃଶ
ହୁଅଇ ତନଲତା
ବ୍ୟସ୍ତ କୁନ୍ତଳା,
ଝଲସଭବ ଦେହେ
ସହଇ ବିଧୂରେ ସେ
ବିରହ ଜ୍ୱଳା ।
ବାହୁଡ଼େ ଯେ କାଳେ ମୁଁ
ଦୂର ପ୍ରବାସୁ ମୋର
ପ୍ରିୟ କୁଟୀରେ,
ନିମିଷେ ଝଲେ କାନ୍ତ
ବିରହମାଣା ପ୍ରିୟା
ବଦନ ତୀରେ ।
ସୁରତ କାଳେ ତାର
ସରସ ଲୀଳାମୟ
ମୁଖ ମଦିର ।
କେ ବର୍ଣ୍ଣି ପାରେ କହ
କି ସୁଖ ଲଭେ ପିଇ
ହୋଇ ଅଧାର ।

( ଢେୟୁରୀ )

# ବିରହିଣୀ

ବିରହ ବିଧୁରା ପ୍ରାଣ ସଜନୀ ମୋ
କେସନେ ବିରହ ବ୍ୟଥା,
ଉପଶମ ଆଶେ କରୁଛି ଯତନ
ଶଠ ଶୁଣ ସେହି କଥା ।

ଅବିଶ୍ରାନ୍ତ ଅଶ୍ରୁ ଧାରକୁ ସେହି ଗୋ
ଅରପିଛି ବନ୍ଧୁ ଜନେ,
ପରିଜନେ ଭଗ୍ନ ହୃଦ ବ୍ୟଥା ସହି
ଗୁରୁ ଚିନ୍ତା ଗୁରୁଜନେ ।

ସଜନୀଙ୍କ ପ୍ରାଣେ ପ୍ରାଣ ତାପ ଜ୍ୱାଳା
ଭରି ଅଛି ଅନୁକ୍ରମେ,
ନିଜ ଖେଦ ନିଜ ଜନେ ବିତରନ୍ତି
ଚିନ୍ତା କର ନାହିଁ ତମେ ।

ବେଗେ ଯାହା ଖାଲି ନାସା ପବନର
ଚଳାଚଳ ଦୁଃଖ ଦାଉ
ଆଜି ଅବା କାଲି ଲଭିବ ବିଲୟ
ନ ରହିବ ତାହା ଆଉ ।

( ଜଉତୁରୀ )

## ବିଫଳତା ପରେ

ଶଠ ଦୟିତ ଋତୁ ମୋହିବା ପାଇଁ
କଟି ମେଖଳା ମୋର ଦେଲି ଖସାଇ,
ଏପରି କମ୍ପାଇଲି କୁଚ ଯୁଗଳ
ସତେ ଫାଟିବ କଞ୍ଚୁକା ମୋହର ।

ତଥାପି ଅଳି ପ୍ରିୟ ଚପଳ-ଋତୁ,
ମୋ' ପାଇଁ ଝଳେ ତରଳିଲା ନାହିଁତ ।
ଅଭିମାନେ ତ ଏବେ ଫାଟଇ ହିଆ,
ନ ଫାଟି ସେତେବେଳେ ରହିଲା କଆଁ ?

( ପଞ୍ଚସ୍ୱର )

## ପ୍ରୀତି-ପଥ

ପ୍ରଥମ ଦରଶନେ ପୀରତି ଜାତ ମନେ
ମଞ୍ଜଇ ଅତି ଅନୁରାଗେ,
ମାନସୀ କଥା ଅନ୍ତ ପ୍ରଣୟ ଯଥାରୀତି
ଲଭଇ ବୃଦ୍ଧି ପ୍ରାଣ ସଙ୍ଗେ ।

ଶୁଣିଲେ ଦୂତୀଭାଷା ପ୍ରିୟା ମିଳନ ଆଶା
ଜାଗଇ ଅନ୍ତରେ ଅନିବାର,
ନବଢ଼ ଘନ ପ୍ରୀତି ଏମନ ତାର ଗତି
ଉପାୟ ଚିନ୍ତା ହୁଏ ସାର ।

ସତ୍ୱରେ ନାୟିକାରେ ଆଶ୍ଳେଷ ବାହୁଦ୍ୱାରେ
ଜାତ ଯେ ସୁଖ-ଆଉ ଦୂରେ,
ପ୍ରେୟସୀ ଗୃହ ପଥେ କରତ ଗତାଗତେ
ସନ୍ତୋଷ ମିଳେ ପ୍ରାଣ ପୂରେ ।

( ଛପ୍ତବ )

## ମାଳିନୀର ମଙ୍ଗଳ ଚିନ୍ତା

ନୀଳ ଲୋଚନୁ ଅଶ୍ରୁ ବହାଇ ଅବିରତ
କାତର ଭରେ କେତେ ଦେଇ ଶପଥ,
ପଯ୍ୟର ତଳେ ଲେଟି ପ୍ରାଣରଙ୍କ ତରୁଣୀ
ଖୋଧନ୍ତ ପ୍ରିୟଙ୍କର ପ୍ରବାସ ପଥ ।

ତାଙ୍କର ସମ ପ୍ରାଣ ରଙ୍କୁଣୀ ନୋହି ମୁହିଁ-
କହିବ ପ୍ରିୟତମେ କରି ଆଦର,
'ଶୁଭ ପ୍ରଭତ ଏହି, ଶୁଭ ମନାସି ଯାଅ
ମଙ୍ଗଳମୟ ହେଉ ଯାତ୍ରା ତୁମର ।

ଶୁଣିବ ପଥେ ମୋର ଖବର ସିନା ତମେ
ପଥିକ ଜନ କେହି କହି ବା ପାରେ,
ପ୍ରୀତି-ପାଳତା ତୁମ ଅଭାଗୀ ପ୍ରିୟତମା!
ତୁମ ବିହୁନେ ଆଉ ନାହିଁ ସଂସାରେ ।"

ଶୁଭ ଲଗନେ ତମେ ଯାଉଛ ପ୍ରିୟତମ
ତେଜିବ ନାହିଁ ଏବେ ମୋର ଜୀବନ,
ଗମନ କାଳେ ଶୁଭ ସୂଚକ ନୁହେଁ ଯେଣୁ
ଅଶ୍ରୁ ମୋଚନ ଅବା ମୃତ୍ୟୁବରଣ ।'

( ସତ୍ୟବ୍ରତ )

## ଧରି ପାରୁନାହିଁ...

ପ୍ରୀତିହୁଡ଼ା ପ୍ରଣୟିନୀ ପଣ୍ଟରଇ
ପ୍ରାଣର ଆବେଗେ
ଧରି ବୟସିକା ହାତ,

ସଜନୀ ନିକଟରେ ନାହିଁ ଆଉ ଆଶା,
କହିବାକୁ ମୋର ହୃଦୟର ଭାଷା,
କହ କି କରିବି ମାତ ?

ଲାଜ ସରମେ ତ ମୋର ପ୍ରିୟତମେ
ନ ପାରେ ବଢ଼େଇ ଲଜ୍ଜିତ ନୟନେ ଚାହିଁ ।
ମୋର ମନକଥା ସେହି ସୁଚତୁର,
ନାଗର ଜାଣନ୍ତି ସହି ଲୋ ସକଳ
ତଥାପି କେସନେ ପ୍ରଣୟ ସଙ୍କେତ
ଦେବ ସବ ପାରୁନାହିଁ ।

ହାସ ପରିହାସ ଚତୁରିକା ଗଣ
ଚଉଦିଗେ ଛନ୍ତି ଘେରି,
ଟିକିଏ ଇସାରା ପାଇଲେ ସେମାନେ
ଖାଇ ଥିବେ କେତେ କେଳି ।
କହ ଆଗୋ ମାତ କା' ପଶେ ଶରଣ
ପଶି ପୂରାଇବ ଆଶ
ଏ ମରମେ ଝୁରେ,

ପ୍ରୀତି ଅନୁରାଗ ଅନଳ ମରଇ
ଆଜି ଏ ହୃଦୟ ପୁରେ ।

( ଅଠସ୍ତରୀ )

## ନିଜ ଦୋଷୁଁ...

ଅଙ୍ଗ ସୀମାରେ ମୋର
ସୁରତ କାଳେ କେଉଁ କରଜ କ୍ଷତ,
ମଧୁ ମଦର ମତ୍ତା
ମାନିନୀ ବାଳା ଦେଖି ହେଲ ଆହତ ।

ନବୀନା ନୀବିବନ୍ଧ
ମୋଚନ କାଳେ ଯେ ଗୋ ନିଜ କରଜେ
ଦେଇଥିଲ ତ ଏହି
ଚିହ୍ନ ମୋ ଅଙ୍ଗ ତଟେ ଭୁଲି ସହଜେ-

ସବଳ ଆନ କେଉଁ
ରମଣୀ ରତି କାଳେ ଦେଇଛି ଦାଗ
ଈର୍ଷା ଅନଳେ ଜଳି
ଚଳିଲ ପାଶ ବନ୍ଧୁ ହୃଦୟେ ରାଗ ।

ପଣତ କାନି ତାର
ଟାଣି କହିଲି, 'ସହି ଯାଉ କେତିକ ?'
ସଜଳ ନେତ୍ରେ ବାଳା
ଅଧର ଓଠ ତାର ଚାହିଁ ଏତିକି-

କହିଲା, 'ଛାଡ଼, ଶଠ
ଏକ ତମର ରୀତି ଛାଡ଼ ଗୋ ମତେ-'
ମାନିନୀ ବାଳାର ସେ
ବଚନ ମୁଁ କି ଭୁଲି ପାରିବି ସତେ !!

( ଅଣାଅଣି )

## କଳହାନ୍ତରିତା

ମାନିନୀ ପଦ ତଳେ ଲୋଟିଲେ ପତି,
ବିନୟ ଅନୁନୟ ହୋଇଲେ ଅତି ।
ତଥାପି ଖଳେ କୃପା ଝରିଲ ନାହିଁ,
ଦୟିତା ହୃଦୟରୁ ଦୟିତ ପାଇଁ

'ଗୋପନ ଶଠ ରୀତି ଆଚର କେତେ?'
କୋପନ କଟୁବାଣୀ କହନ୍ତେ ଏତେ-
ସେ କାନ୍ତ ଗଲେ ଫେରି ଆହତ ମନେ,
ବାମା ତେଜିଲା ନାସା ନିଃଶ୍ୱାସ ଘନେ ।
ଜଳିଲା ଅନୁତାପ ଅନଳେ ହିଆ,
କଠୋର କଥା ଏତେ କହିଲି କିଆଁ ?

ଥାପି ତା କର ବେନି ବକ୍ଷୋଜ ପରେ,
ଅଶ୍ରୁ ନୟନ ଢାଳେ ସଖୀ ଝକରେ ।



## ସୁରତ ଶେଷେ

ଛଇଳା ବିପରୀତ ସୁରତ ଶେଷେ,
ଦେଖେ ମେଖଳା ନାହିଁ ତା'କଟି ଦେଶେ ।
ଲୋଟଇ କାହିଁ ତଳେ ତାର ଦୁକୂଳ
ସରମେ ଜଡ଼ ବୁଡ଼ ହୁଏ ଆକୁଳ ।
ପ୍ରଦୀପ ଜଳୁଛ ତ ଅଳପ ଦୂରେ,
ପ୍ରିୟ ନୟନ ଲଜ ସଙ୍ଗମ ଚୂରେ ।

କର ପଲ୍ଲବେ ଗୃହ ପ୍ରଦୀପ ଶିଖା,
ଲିଭାଇବାକୁ ଯତ୍ନ କରେ ନର୍ତ୍ତିକା ।
ଫିଙ୍ଗଇ ବିଦଳିତ କୁସୁମ ମାଳା,
ଯହୁଁ ନ ନିଭେ ଶିଖା ତହୁଁ ସେ ବାଳା
କୁହୁଳି ହସି ଘନ ଘନ ଚୁମ୍ବନେ,
ମୁଦଇ ଭୂପ-ଶ୍ରେଷ୍ଠର ପଦ୍ମନୟନେ ।

( ଏକାଅଶୀ )

# ଅବଳା

କାତର ନେତ୍ରେ ବାଳା
ଚାହିଁଲ ବହୁକାଳ ପ୍ରିୟ ବଲ୍ଲଭେ,
ଅଶେଷ ଅନୁନୟେ
ମିନତି କଲା ଯୁକ୍ତ- କର ପଲ୍ଲବେ ।

ସଙ୍କୋଚ ତ୍ୟାଗି ସେ
ଦୟିତ ପିନ୍ଧା ବାସ ଓଟାରି ଧରି,
ନିବିଡ଼ ଆଲିଙ୍ଗନ
ଦେଇ କହିଲା, 'ମତେ, ଛାଡ଼ି ଏ ପରି,

ଯାଅ ନା ପ୍ରିୟତମ ଦୂର ପ୍ରବାସେ,
କପାଳ କାଟିବି ମୁଁ କାଳ କା' ପାଶେ ?

ନିଠୁର ଶଠ ପ୍ରିୟ କଠୋର ହିଆ ବନ୍ଧୁ
ବରଜି ପ୍ରୀତି,
ପ୍ରବାସେ ଯିବା ଲାଗି ତିଆରି ହେଲେ ଯହୁଁ
ଦେଖି ଏ ରୀତି-

ବିଫଳ ମନୋରଥେ
କାମିନୀ ପ୍ରିୟା ନିଜ ଜୀବନ ଆଶା,
ପ୍ରଥମେ ତୁଟାଇଲା
ପଘଣ ତଳୁ ତାର ନ କହୁ ସଖା ।

ତା' ପରେ ପ୍ରିୟତମେ ହେଲ ବିଦାୟ
ଅବଳା ଅଭଗିନୀ ବିଚାରି ହାୟ !!

( ବସ୍ତ୍ରାଅଣି )

## ହୃଦୟ-ଅଶ୍ରୁ

''ପ୍ରଣୟୀ ପ୍ରିୟ ତୋର
ଭେଟିଲେ ବସ୍ନକାଳ
ପୟୂର ତଳେ,
ଆଜ କ ଲଗି ସହି
ରହିଲୁ କୋପ ବହି
ହୃଦୟ ସ୍ଥଳେ ।
କ ଛାର ଦୋଷ ଲଗି
ଏପରି ବୃଥା ରାଗି
ନଠୁର ହେଲୁ,
ଅନ୍ତର ତଳୁ ତୋର
ମମତା ପ୍ରୀତି ଡୋର
ତୁଟାଇ ଦେଲୁ ?''
ସଜନୀ ଭଷା ଶୁଣେ
ମରମେ ଝବା ଗୁଣେ
ନ କହେ କଥା,
କୋପିନୀ କୋପାବେଗ
ଯେବେଟି ଶମଇ ଗୋ
ହୃଦୟ ବ୍ୟଥା,
ସଜଳ କରେ ବାଳା
ନୟନ ବେନି ଡୋଳା
ଲୋତକ କଣା,
ନ ରହେ ନେତ୍ର ତୀରେ
ନ ଆସେ ଗଣ୍ଡ ସ୍ଥଳେ
ମରମ-ଛଣା ।

(ଦେବ୍ୟାଅଣୀ)

# ମନ୍ତ୍ର

ଶୁଣା ଲେ ସହି ମୋର ଏହି ବଚନ
ଅଲ୍ପ କପଟୀ ମୁଗ୍‌ଧା ନାୟିକାଗଣ,
କରନ୍ତି ବଶ ନିଜ ପତିଙ୍କୁ ଛଳେ
ନ ଘେନ ମନା ଯେତେ ବାରଣ କଲେ ।

ତେବେ କିପାଇଁ ସହି କରୁ ଭାବନା
ବୃଥା ବେଦନ ତୋର ଅନୁଶୋଚନା,
ସକଳ ତିଆଗ ତୁ ପରାଣ ମିତ
କେଳି ଚତୁର ଯୁବା ତୋର ଦୟିତ ।

କହି ଲେ ଶତ ଶ୍ଳେଷ କଟୁ ଭାରତୀ
ତାଙ୍କର ତୁଲେ ରଖ ପ୍ରୀତି କେଳିଠି,
ତୋ ପ୍ରିୟତମେ ବଶ ନ କର କିଆଁ
ଯୋଡ଼ୁଛୁ ମିଛେ ତୋର କଅଁଳ ହିଆ ?

(ଚଉସଅକ୍ଷୀ)

# ବିରହୀ ପାନ୍ଥ

ନିଶୀଥେ ବାଦଲ ଭରା ଅଳସ ଘନ-
ଗୁରୁ ଗୁରୁ ଗମ୍ଭୀର- ନାଦୀ ଗର୍ଜନ,

ପଥିକ ଜନ ଏକ ଶୁଣି ଚକିତେ
ନଭେ ଜଳଦେ ଚାହିଁ ରହି ଶଙ୍କିତେ,

ପ୍ରିୟା-ବିରହ ଘୋର ଦୁଃଖ-ସୂଚକ-
ଗୀତ ଗାଇଲା ନେତ୍ରୁ ଢାଳି ଲୋତକ।

ଦାରୁଣ ବ୍ୟଥାଭରା କରୁଣ ଗୀତ
ବିମୁକ୍ତ କଣ୍ଠେ ତାର କ୍ରନ୍ଦନ ରୀତ

ଶୁଣି ସେ ପୁରବାସୀ ଆଉ ନିଶୀଥ
ଆଶ୍ରୟ କଲେ ମନା ଗ୍ରାମେ ପଥିକେ।

( ପଞ୍ଚାଞ୍ଜଳି )

## ନିଦ୍ରା ଛଳେ···

‘ଗୂଢ଼ କଥା ଫେଡ଼          କହିଲେ ସଖିଏ
ବାମ ଲୋଚନା ମୋ ପ୍ରିୟା,
ପିନ୍ଧା ବାସ କାନି-          ପଣତ ଜବଡ଼େ
ମେଖଳାରେ ବାନ୍ଧି କଆଁ

ପଲଙ୍କ ଉପରେ          ପହୁଡ଼ ଯାଇଛ
କଆଁ ସେ ଗୁମାନ ବତୀ ?”
ଧୀରେ ଧୀରେ ଉତ୍ୟେ          ପଚ୍ଚରନ୍ତି ଯେବେ
ଅପରାଧୀ ପ୍ରିୟ ପତି-

କୋପିନୀ ତରୁଣୀ          ସ୍ୱପନ ଛଳରେ
ଉଚ୍ଚ ସ୍ୱରେ କରେ ରଡ଼,
‘ମାଆଲେ ଦେଖୁଚ          ଶୋଇବାକୁ ମୋତେ
ନ ଦଅନ୍ତି କେଉଁ ପର ।’

ରତି ଆଶେ ବ୍ରୀଡ଼          କୋପ ତରଳିଲ
ବାଳା ଛଳ ନିଦ୍ରାବେଶେ,
କଡ଼ ଲେଉଟାଇ          ସ୍ଥାନ କରିଦେଲା
ପଲଙ୍କେ ପତିଙ୍କ ଆଶେ ।

( ଛନ୍ଦ୍ରାଅଣୀ )

## ଖାଲ ଗୃହସ୍ଥଁଙ୍କ ::

କାନ୍ତ ପ୍ରବେଶ କାଳେ
ଅନ୍ତ ଭବନେ,
ବାଳା ଶୋଧ୍ନି ପଥ
ବିମୁଖ ମନେ ।

କହନ୍ତି କୋପେ ସେତ
କଠୋର ବାଣୀ,
ଦୋଷୀ ଦମ୍ଭିତ କୀର୍ତ୍ତି
କଳାପ ଜାଣି ।

କେବଳ ସେ ଗୃହିଁଙ୍କ
ଙ୍କ ସ୍ୱବ ମନେ,
ଗୃହେଁ ଯେସନେ ଆନ
ଇତର ଜନେ ।

( ସୁଭାଷିଣୀ )

## ବୃଥା ମାନ

କଠିନ ହୃଦୟା ଦୟିତ ତୋର ଲୋ
        ଦୁଆରେ ରହି
ନତ ମୁଖେ ନିଜ କରଜ ରେଖାରେ
        ଚିରନ୍ତି ମହୀ ।
ଅଶନ ତଆଗି ଦୁଃଖିନୀ ସଖିଏଁ
        କ୍ରନ୍ଦନ ରତା,
ଦେଖୁନୁ କପର ଫୁଲନ୍ତି ତାଙ୍କର
        ନୟନ ପତା ।
ତୋ ଦଶା ନିରେଖି ସମଦୁଃଖରେ ଲୋ
        ପିଞ୍ଜରା ଶୁକ,
ବରହେ କମିତ ପଠନ ବରଜି
        ଲଭଇ ଦୁଃଖ ।
ତୋ ତନୁ କେସନେ କୃଶ ହୋଇଲଣି
        ଦଶୁଥି ଟିକ,
ମାନ ତୁ ତଆଗ ସଖିଲେ ଆଉ କ
        ଫଳ ଅଛି କ ?

( ଅଠାଅଶୀ )

## ବିଦେଶ ଗମନ କାଳେ···

"ବିଦେଶ ଗଲେ କି କେହି
କହ ଆଉ ଫେରି
ନ ଦେଖନ୍ତି ପ୍ରୀତି ପଙ୍କଜନେ,
ମୋ' ଲାଗି ଭାବନା କିଆଁ
କରୁଅଛୁ ବୃଥା
ଭରି ଗୁରୁ ସନ୍ତାପ ତୋ ମନେ ?

ଅଙ୍ଗ ତୋର ହେମାଙ୍ଗିନୀ
ଅଙ୍ଗାର ହେଲଣି
ଚିନ୍ତାଭରୁ ହୃଦୟେ କପାଇଁ ?"
ଲେଖକ ସଜଳ ନେତ୍ରେ
କହିଲ ତାହାରେ
ଯେତେ ଘଣା ନୟୁମ ପକାଇ ।

ସେ କେବଳ ଚାହିଁ ଥିଲ
ମନେ କେତେ ସତେ
ମୁଖକାନ୍ତି ପଡ଼ିଥିଲ ଫିକା,
ଲଜ୍ଜାଭରେ ବିଜଡ଼ିତ
ଅଳସ ଚଳିତ
କାମିନୀର ବେନ କନୀନିକା ।

ନୟନୁ ଝରିଲ ଯେତେ
ଅଶ୍ରୁ କଣା ତାର
ଲୁଛି କରି ସେତୁ କେଉଁ ମତେ,
ଶୁଷ୍କ ହାସ ହସୁଥିଲ,
ମରଣ କାମନା
ରଖି ପ୍ରିୟା ତାର ହୃଦଗତେ ।

( ଅଣାନଦେ )

# ପ୍ରୀତି-ପ୍ରମାଦ

ତୋହ୍ର ପତ୍ର ନବ        ତରୁଣୀ ଅଛନ୍ତି
ପ୍ରୀତିପୁରେ ପ୍ରୀତି ବାସେ,

ଯାଅ ତୁ ସତ୍ୱରେ        ପଚାର ବୁଝିବୁ
ମିତ ସେମାନଙ୍କ ପାଶେ ।

ତାଙ୍କ ପ୍ରିୟତମେ        ସବିନୟେ ତାଙ୍କ
ପଦେ ପ୍ରଣିପାତ କର,

ପ୍ରଣୟିନୀ ପ୍ରାଣ-        ତୋଷ କରନ୍ତିଛ
ମୋର ପତି ଦାସ ପର ।

ତୁହି ତ ହେଉଛୁ        ତୋହର ଭଟାରୀ
ଖଳ ଜନ କଥାଶୁଣି,

କେଉଁ ପରିଣତ        ହେବ ଏ ବେଦନା
ସେ ଶୁଣିଥିଲେ ପତ୍ନୀ ପୁଣି ?

ଜାଣିଛ ପାରୁନ୍        ଚପଳା ପ୍ରିୟାଲେ
ପୁରୁଷ ପୀରତି ସ୍ୱାଦ,

ତୁଟିଯିବ ସ୍ନେହ        ସରାଗ ମମତା
ଅଛି ତ ଏ ପରମାଦ ।

## ଔତ୍ସୁକ୍ୟ

ଆଖି ଯେତେ ଦୂର ପାଇଲା ସେ ଯାଏଁ
ଚାହାଁଇ ପଥିକ-ବଧୂ,
ଆସିବାର ଥିଲା ଯେଉଁ ପଥେ ତାର
ବିଦେଶୀ ପବଣ ବନ୍ଧୁ ।

ଚାହିଁ ଚାହିଁ ହାୟ ଦିନ ହେଲା ଶେଷ
ତମସା ଆସିଲା ଘେରି,
ଗତାଗତ ଶୂନ୍ୟ ହେଲା ଜନପଥ
ପ୍ରିୟ ନ ଆସନ୍ତି ଫେରି ।

ହତାଶିନୀ ପାନ୍ଥ ବନିତା ହୃଦୟେ
ବହି ଗୁରୁ ଅବସାଦ,
ଗୃହେ ଲେଉଟିବା ଆଶେ ଗୃହ ମୁଖେ
ପକାଇଲା ଏକ ପାଦ ।

ଏବେ ପୁଣି ମନେ ଏ ସମୟେ ସତେ
ଆସିଥିବେ ପ୍ରାଣ ବନ୍ଧୁ,
ବଙ୍କା କରି ଗ୍ରୀବା ପଛକୁ ସେ ଚାହେଁ
ଉତ୍ସୁକେ ପଥିକ-ବଧୂ ।

(ଏକାନଠବ)

## କେବଳ ..

''ଏପନ କୋପ ହୃଦେ
ନ ଥିଲ ତୋର କେବେ   ସଜନ !''
ପୟର ତଳେ ତୋର
ବନଯ୍ୟେ ଲୋଟେ ମୁଁ ଲୋ   ଦେଖନ !
ମଉନ ପଣ ମନୁ   ତିଆଗ,
ଦେ' ଲୋ ଦେ' ତୋର
ହୃଦୟ ଛଣା ପ୍ରୀତି   ସୁଆଗ ।

କହନ୍ତେ ନାଥ କଥା,
ଦୟିତା ପାଇ ବ୍ୟଥା
ଅଳପ ନମୀଳିତ,
ନୟନୁ ଅବିଶ୍ରାନ୍ତ
କେବଳ ଅଶ୍ରୁକଲ   ମୋଚନ,
କହିଲ ନାହିଁ ପଦେ   ବଚନ ।

(ବୟାନବେ)

## ବିଚିତ୍ର କଥା

ସେତ ଅଟଇ ବୃଦ୍ଧ
ଛଇଳା ବାଳା...
ଚଞ୍ଚଳ ମନା ଆମେ
କହ କପାଇଁ ?
ସ୍ୱଭବେ କାତର ତ
ଅଟଇ ସ୍ତିରୀ
ଆମେ କାତର କିଆଁ
ତାହାରେ ଗୃହିଁ !
ସେତ ବହନ୍ତି
ପୀନ ଉରଜ ବେନି
ତାହାର ବ୍ୟଥା କିଆଁ
ଆମଙ୍କୁ ଲଗେ ?
ବୃଦ୍ଧ ଜଘନା ସେତ...
ତାହାରେ ଦେଖି
ଆମ ଗମନେ କିଆଁ
ଅଳସ ଜାଗେ !
ଆନ ଜନରେ ଦୋଷ
କରନ୍ତି ଆତ୍ମା
ଆମେ ଅକ୍ଷମ କିଆଁ
ଅପଟୁ ହେଉ ?
ବିଚିତ୍ର କଥା ଏ ଯେ
ବିସ୍ମୟ ଲଗେ
କହ ବନ୍ଧୁ ଏହୁ
ବିଧାନ କେଉଁ !!

( ତେଷ୍ଟାନବେ )

## ଉପାୟ କୁହ···

ବିରହେ ତବ ଦୁଃଖ
କୁସୁମ-ଧନ,
ଦିନକୁ ଦିନ କ୍ଷୀଣ
କରଇ ତନୁ ।

ଶୁଣୁଛି ଦିନ ଯମ
ଦକ୍ଷ ଗଣକ,
ବିଗତ-ସ୍ନେହୀ ସେହୁ
ପରା ଅନ୍ତକ ।

ତହିଁକି ତମେ ନାଥ
ସରାଗ ହୀନ,
ହୋଇଲେ ପୁଣି ମାନ
ବ୍ୟାଧି ଅଧୀନ-

ରଖିବ କେଉଁ ପରି
କହ ଜୀବନ,
କମଳଠୁ କୋମଳ
ପ୍ରମଦା ଜନ !!

(ଚଉସନବେ)

# ପ୍ରୀତିଭରା ମାନ

ପ୍ରୀତି ମାନ ତାର ଚୁମ୍ବିବା ପାଇଁ କି
ତା' ବେନି ପୟର ତଳେ,
ପ୍ରଣମିବ କାଳେ ସବ ବାଳା ପଦ
ଲୁଚାଏ ବସନାଞ୍ଚଳେ ।

ଦେଖି ମତେ ତାର ଉକୁଟିଲେ ହସ
ଲଳିତ ଅଧର ତୀରେ,
ଚତୁରୀକା ଚାପି ଦଅଇ ତାହାରେ···
କଉଣଛଳେ ଅତି ଧୀରେ ।

ସ ୍ମୁଖେ ସେ ମତେ ନ ଚାହିଁ ଚାହିଁ ..
ଅଳ୍ପ କରି ଥାନ୍ତ ଆଖି,
ପଚାରିଲେ କଥା ପ୍ରତୀପ ବଚନେ
ସଖୀଜନେ କରେ ସାକ୍ଷୀ ।

ପ୍ରୀତି ଭରା ଏଇ ମାନ ସଜନୀର
କେମନେ ଭୁଲିବ ଆଉ !
ମାନମୟୀ ଯେବେ ଏତେ ରମଣୀୟ
ସତତ ସେ ମାନ ଥାଉ ।

( ପଞ୍ଚାନନେ )

# ପ୍ରିୟବନ୍ଦନା

ସରସୀ ନୀଳୋତ୍ପଳେ
ନ ରହୁଁ ବାଳା,
କୃଷ୍ଣ ଅପାଙ୍ଗେ ତାର
ରହିଲା ମାଳା
କାନନ କୁନ୍ଦ ଜାଇ
ଫୁଲେ ନ ରହୁଁ,
ମଧୁର ସ୍ମିତେ ପୁଷ୍ପ
ଦେଲ ଫୁଟାଇ ।
ନ ଆପି ଅର୍ଘ୍ୟ ଲଗି
ଭରି କଳସୀ,
ସ୍ୱେଦ ସିକ୍ତ ଉରଜେ
ଜଳ ପରଶି,
ତା' ଅଙ୍ଗ ଅବୟବେ
ରହୁ ଅଙ୍ଗନା
ବଙ୍ଗଦେଶାଗତ ପ୍ରିୟେ
କଲ ବନ୍ଦନା ।

( ଛାୟାନବେ )

## ମାନିନୀର ଅଶ୍ରୁକଣ...

ମୋ ପ୍ରାଣ ପ୍ରିୟତମା
କଠୋର ମାନ,
କେତେବେଳକେ ଯେବେ
ଭଜିଲ ମ୍ଲାନ ।
କର ପାପୁଲି ପରେ
ତା' ଶଶି ମୁଖ,
ଥାପି ସେ ଭୋଗୁଥିଲ
ହୃଦୟେ ଦୁଃଖ ।

ଉପାୟ ହୀନ ହୋଇ
ତା' ପଦ ତଳେ,
ପ୍ରଣାମ ଆଶେ ମୁହିଁ
ପ୍ରୟାସ କଲେ ।
ନୟନ-କୋଣ-ରୁଦ୍ଧ
ଲୋତକ କଣା,
ତା' ସ୍ତନ ପରେ ଖସି
ହୁଅଇ ବଣା ।

ମୋ ମାନମୟୀ ପ୍ରିୟା ଶତ ପ୍ରସାଦ
ସୂଚାଏ ଅଶ୍ରୁକଣ ହୃଦ ଆହ୍ଲାଦ ।

( ଶତାନନ୍ଦ )

## ପ୍ରଥମ ଅପରାଧ

ପ୍ରଥମ ଅପରାଧ
କରନ୍ତି ଯେବେ ପ୍ରିୟ
ସଜନୀ ଶିକ୍ଷା ପାଇ ନ ଥିଲେ,
ଜାଣଇ ନାହିଁ ବାଳା
କେସନେ ପ୍ରୀତିଧାରା
ଅଙ୍ଗବଳାସେ ବକ୍ର ଉକ୍ତିରେ ।

ନୟନ କୁବଳୟ
ଆକୁଳ କର ଖାଲି
ନିର୍ମଳ ନେତ୍ରବାରି ବୁହାଇ,
ଵମଳ ଗଣ୍ଡମୂଳ
ଭସାଏ ଅବିରଳ
କାନ୍ଦଇ କେବଳ ସେ ତୁହାଇ ।

( ଅଠାନବେ )

## ଶପଥ

କାନ୍ତେ ନକର ମାନ-
କଲେ ବାରଣ,
ନାୟିକା ଅଭିମାନେ
କହେ ଏମନ-

ଆଜନ୍ମୁଁ ସହି ମୋର କାନ୍ତ ସହିତ
ପ୍ରଣୟ କଳ କେବେ ହେବ ନାହିଁ ତ ।
ସେ ଶଠ ନାମ ବିଷ ପର ଲଗୁଛି
ମୁଖେ ମୋ ନ ଧରିବ ପଣ କରୁଛି ।

କିବା ମୁଁ ସଜନୀ ଲୋ ଆଉ ରଜନୀ
-ବିଧୁ-କର-ଧବଳା-ଅଟ୍ଟ-ହାସିନୀ-
ଅବା ବରଷା କାଳେ ଗୋଟିଏ ଦିନ
-ସଜଳ କୃଷ୍ଣକାନ୍ତ ମେଘ ମଳିନ-
ଯାପିବି ନାହିଁ କେବେ ତାଙ୍କ ବିନା,
ବିରହାନଳେ ତନୁ ଜଳିବ ସିନା !!

( ଅନେଶତ )

# କାମ ଅଭିଷେକ

ରମ୍ଭା ତରୁ ସେତ
ଉରୁ ବେନ
ମୃଗ ନୟନାର,

ଶୋଭ ଜଳ ଭରା
ସୁନାକୁମ୍ଭ
କି ସେ ସ୍ତନ ତାର !

ବେଦୀ ଅପରୂପ
ମଝି ଦେଶ
ଶୋଭ ପରକାଶେ,

ସେତ ସଜ୍ଜା କାମ-
ନରପତି
ଅଭିଷେକ ଆଶେ ।

★ ★ ★

ଅମରୁକକବିଡମରୁକ-

ନାଦେନ ବିନିହ୍ନୁତା ନ ସଂଚରତି ।

ଶୃଙ୍ଗାରଭଣିତିରନ୍ୟା

ଧନ୍ୟାନାଂ ଶ୍ରବଣବିବରେଷୁ ॥

—ରସିକସଂଜୀବନ୍ୟାମର୍ଜୁନବର୍ମଦେବଃ

## ଅମରୁକ-କବେଃ

# ଅମରୁଶତକମ୍

( ୧ )

ଆଲୋଲାମଲକାବଲୀଂ ବିଲୁଳିତା ବିଭ୍ରଚ୍ଚଲତ୍‌କୁଣ୍ଡଳଂ
କିଞ୍ଚିନ୍ମୃଷ୍ଟବିଶେଷକଂ ତନୁତରୈଃ ସ୍ୱେଦାମ୍ଭସଃ ଶୀକରୈଃ ।
ତନ୍ୱ୍ୟା ଯତ୍‌ସୁରତାନ୍ତତାନ୍ତନୟନଂ ବକ୍ତ୍ରଂ ରତିବ୍ୟତ୍ୟୟେ
ତତ୍ ତ୍ୱାଂ ପାତୁ ଚିରାୟ କିଂ ହରିହରବ୍ରହ୍ମାଦିଭିର୍ଦୈବତୈଃ ॥

( ୨ )

ଯଦଷ୍ଟୋଽଧରପଲ୍ଲବେ ସଚକିତଂ ହସ୍ତାଗ୍ରମାଧୁନ୍ୱତୀ
ମା ମା ମୁଞ୍ଚ ଶଠେତି କୋପବଚନୈରାନର୍ତ୍ତିତଭ୍ରୂଲତା ।
ସୀତ୍‌କାରାଞ୍ଚିତଲୋଚନା ସରଭସଂ ଯୈଶ୍ଚୁମ୍ବିତା ମାନିନୀ
ପ୍ରାପ୍ତଂ ତୈରମୃତଂ ଶ୍ରମାୟ ମଥିତୋ ମୂଢୈଃ ସୁରୈଃ ସାଗରଃ ॥

( ୩ )

ଗାଢାଶ୍ଳେଷବିଶୀର୍ଣ୍ଣଚନ୍ଦନରଜଃପୁଞ୍ଜପ୍ରକର୍ଷାଦୟଂ
ଶଯ୍ୟା ସମ୍ପ୍ରତି କୋମଲାଙ୍ଗି ! ପରୁଷେତ୍ୟାରୋପ୍ୟ ମାଂ ବକ୍ଷସି
ଗାଢୌଷ୍ଠଗ୍ରହପୂର୍ବମାକୁଳତୟା ପାଦାଗ୍ରସଂଦଂଶକେ—
ନାକୃଷ୍ୟାମ୍ବରମାତ୍ମନୋ ଯଦୁଚିତଂ ଧୂର୍ତ୍ତେନ ତତ୍ ପ୍ରସ୍ତୁତମ୍ ॥

( ୪ )

ଗାଢାଲିଙ୍ଗନବାମନୀକୃତକୁଚପ୍ରୋଦ୍‌ଧୃତରୋମୋଦ୍‌ଗମା
ସାନ୍ଦ୍ରସ୍ନେହରସାତିରେକବିଗଲତ୍‌ଶ୍ରୀମନ୍ନିତମ୍ବାମ୍ବରା ।
ମା ମା ମାନଦ ! ମାତି ମାମଲମିତି କ୍ଷାମାକ୍ଷରୋଲ୍ଲାପିନୀ
ସୁପ୍ତା କିଂ ନୁ ମୃତା ନୁ କିଂ ମନସି କିଂ ଲୀନା ବିଲୀନା ନୁ କିମ୍ ॥

( ୫ )

ସୁପ୍ତୋଽୟଂ ସଖି ! ସୁପ୍ୟତାମିତି ଗତାଃ ସଖ୍ୟସ୍ତତୋଽନନ୍ତରଂ
ପ୍ରେମାବେଶିତୟା ମୟା ସରଳୟା ନ୍ୟସ୍ତଂ ମୁଖଂ ତନ୍ମୁଖେ ।
ଜ୍ଞାତେଽଲୀକନିମୀଲନେ ନୟନୟୋର୍ଧୂର୍ତ୍ତସ୍ୟ ରୋମାଞ୍ଚତୋ
ଲଜ୍ଜାସୀନ୍ମମ ତେନ ସାପ୍ୟପହୃତା ତତ୍କାଳଯୋଗ୍ୟୈଃ କ୍ରମୈଃ ॥

( ୬ )

କୋପସ୍ତ୍ୱୟା ହୃଦ କୃତୋ ଯଦ ପଙ୍କଜାକ୍ଷି !
ସୋଽସ୍ତୁ ପ୍ରିୟସ୍ତବ କିମତ୍ର ବିଧେୟମନ୍ୟତ୍ ।
ଆଶ୍ଳେଷମର୍ପୟ ମଦର୍ପିତପୂର୍ବମୁଚ୍ଚୈ—
ର୍ମହ୍ୟଂ ସମର୍ପୟ ମଦର୍ପିତ ଚୁମ୍ବନଂ ଚ ॥

( ୭ )

କ୍ୱଚିତ୍ତାମ୍ବୂଲାକ୍ତଃ କ୍ୱଚିଦଗରୁପଙ୍କାଙ୍କମଳିନଃ
କ୍ୱଚିଚ୍ଚୂର୍ଣୋଦ୍ଗାରୀ କ୍ୱଚିଦପି ଚ ସାଲକ୍ତକପଦଃ ।
ବଲୀଭଙ୍ଗାଭୋଗୈରଲକପତିତୈଃ ଶୀର୍ଣ୍ଣକୁସୁମୈଃ
ସ୍ତ୍ରିୟୋ ନାନାବସ୍ଥଂ ପ୍ରଥୟତି ରତଂ ପ୍ରଚ୍ଛଦପଟଃ ॥

( ୮ )

ତ୍ୱଂ ମୃଗାକ୍ଷି ! ବିନୈବ କଞ୍ଚୁଳିକୟା ଧତ୍ସେ ମନୋହାରିଣୀଂ
ଲକ୍ଷ୍ମୀମିତ୍ୟଭିଧାୟିନି ପ୍ରିୟତମେ ତଦ୍‌ବୀଟିକାସଂସ୍ପୃଶି ।
ଶଯ୍ୟୋପାନ୍ତନିବିଷ୍ଟସସ୍ମିତସଖୀନେତ୍ରୋତ୍ସବାନନ୍ଦିତୋ
ନିର୍ଯାତଃ ଶନକୈରଲୀକବଚନୋପନ୍ୟାସମାଲୀଜନଃ ॥

( ୯ )

ଶ୍ଳିଷ୍ଟଃ କଣ୍ଠେ କିମିତି ନ ମୟା ମୂଢୟା ପ୍ରାଣନାଥ—
ଶ୍ଚୁମ୍ବତ୍ୟସ୍ମିନ୍ ବଦନବିନତଃ କି କୃତା କିଂ ନ ଦୃଷ୍ଟଃ !
ନୋକ୍ତଃ କସ୍ମାଦିତି ନବବଧୂଚେଷ୍ଟିତଂ ଚିନ୍ତୟନ୍ତୀ
ପଶ୍ଚାତ୍ତାପଂ ବହତି ତରୁଣୀ ପ୍ରେମ୍ଣି ଜାତେ ରସଜ୍ଞା ॥

( ୧୦ )

ତସ୍ୟାଃ ସାନ୍ଦ୍ରବିଲେପନସ୍ତନଯୁଗପ୍ରଶ୍ଳେଷମୁଦ୍ରାଙ୍କିତଂ
କିଂ ବକ୍ଷଶ୍ଚରଣାନତିବ୍ୟତିକରବ୍ୟାଜେନ ଗୋପାୟ୍ୟତେ ।
ଇତ୍ୟୁକ୍ତେ କ୍ୱ ତଦିତ୍ୟୁଦୀର୍ୟ ସହସା ତତ୍ ସମ୍ପ୍ରମାଷ୍ଟୁଂ ମୟା
ସାଶ୍ଳିଷ୍ଟା ରଭସେନ ତତ୍ ସୁଖବଶାତ୍ ତସ୍ୟାଶ୍ଚ ତତ୍ ବିସ୍ମୃତମ୍ ॥

( ୧୧ )

ଅଲସବଳିତୈଃ ପ୍ରେମାର୍ଦ୍ରାର୍ଦ୍ରୈର୍ମୁହୁର୍ମୁକୁଳୀକୃତୈଃ
କ୍ଷଣମଭିମୁଖୈର୍ଲଜ୍ଜାଲୋଲୈର୍ନିମେଷପରାଙ୍ମୁଖୈଃ ।
ହୃଦୟନିହିତଂ ଭାବାକୂତଂ ବମଦ୍ଭିରିବେକ୍ଷଣୈଃ
କଥୟ ସୁକୃତୀ କୋଽୟଂ ମୁଗ୍ଧେ ! ତ୍ୱୟାଦ୍ୟ ବିଲୋକ୍ୟତେ ॥

( ୧୨ )

ଉରସି ନିହିତସ୍ତାରୋ ହାରଃ କୃତା ଜଘନେ ଘନେ,
କଳକଳବତୀ କାଞ୍ଚୀ ପାଦୌ ରଣନ୍ ମଣିନୂପୁରୌ ।
ପ୍ରିୟମଭିସରସ୍ୟେବଂ ମୁଗ୍‌ଧେ ! ତ୍ୱମାହତ ଡିଣ୍ଡିମା
ଯଦି କିମଧିକତ୍ରାସୋତ୍‌କମ୍ପଂ ଦିଶଃ ସମୁଦୀକ୍ଷସେ ॥

( ୧୩ )

ଲୀଳାତାମରସାହତୋଽନ୍ୟବନିତାନିଃଶଙ୍କଦଷ୍ଟାଧରଃ
କଶ୍ଚିତ୍‌କେଶରଦୂଷିତେକ୍ଷଣ ଇବ ବ୍ୟାମୀଲ୍ୟ ନେତ୍ରେ ସ୍ଥିତଃ ।
ମୁଗ୍ଧା କୁଡ୍‌ମଳିତାନନେନ ଦଦତୀ ବାୟୁଂ ସ୍ଥିତା ତସ୍ୟ ସା
ଭ୍ରାନ୍ତ୍ୟା ଧୂର୍ତ୍ତତୟାଥବା ନତିମୃତେ ତେନାନିଶଂ ଚୁମ୍ବିତା ॥

( ୧୪ )

ମୁଗ୍‌ଧେ ମୁଗ୍‌ଧତୟୈବ ନେତୁମଖିଳଃ କାଳଃ କିମାରଭ୍ୟତେ
ମାନଂ ଧତ୍ସ୍ୱ ଧୃତିଂ ବଧାନ ଋଜୁତାଂ ଦୂରେ କୁରୁ ପ୍ରେୟସି ।
ସଖ୍ୟୈବଂ ପ୍ରତିବୋଧିତା ପ୍ରତିବଚସ୍ତାମାହ ଭୀତାନନା
ନୀଚୈଃ ଶଂସ ହୃଦି ସ୍ଥିତୋ ହି ନନୁ ମେ ପ୍ରାଣେଶ୍ୱରଃ ଶ୍ରୋଷ୍ୟତି ॥

( ୧୫ )

ଭ୍ରୂଭଙ୍ଗେ ରଚିତେଽପି ଦୃଷ୍ଟିରଧିକଂ ସୋତ୍କଣ୍ଠମୁଦ୍ୱୀକ୍ଷତେ
ରୁଦ୍ଧାୟାମପି ବାଚି ସସ୍ମିତମିଦଂ ଦଗ୍‌ଧାନନଂ ଜାୟତେ ।
କାର୍କଶ୍ୟଂ ଗମିତେଽପି ଚେତସି ତନୂ ରୋମାଞ୍ଚମାଲମ୍ବତେ
ଦୃଷ୍ଟେ ନିର୍ବହଣଂ ଭବିଷ୍ୟତି କଥଂ ମାନସ୍ୟ ତସ୍ମିନ୍ ଜନେ ॥

( ୧୬ )

ଏକସ୍ମିନ୍ ଶୟନେ ପରାଙ୍ମୁଖତୟା ବୀତୋତ୍ତରଂ ତାମ୍ୟତୋ—
ରନ୍ୟୋନ୍ୟଂ ହୃଦୟସ୍ଥିତେଽପ୍ୟନୁନୟେ ସଂରକ୍ଷତୋର୍ଗୌରବମ୍ ।
ଦମ୍ପତ୍ୟୋଃ ଶନକୈରପାଙ୍ଗବଲନାନ୍ମିଶ୍ରୀଭବଚ୍ଚକ୍ଷୁଷୋ—
ର୍ଭଗ୍ନୋ ମାନକଳିଃ ସହାସରଭସଂ ବ୍ୟାବୃତ୍ତକଣ୍ଠଗ୍ରହଃ ॥

( ୧୭ )

ଦୃଷ୍ଟ୍ୱୈକାସନ ସଂସ୍ଥିତେ ପ୍ରିୟତମେ ପଶ୍ଚାଦୁପେତ୍ୟାଦରା—
ଦେକସ୍ୟା ନୟନେ ନିମୀଲ୍ୟ ବିହିତକ୍ରୀଡାନୁବନ୍ଧଚ୍ଛଳଃ ।
ଈଷଦ୍ବକ୍ରିତକନ୍ଧରଃ ସପୁଲକଃ ପ୍ରେମୋଲ୍ଲସନ୍ମାନସା—
ମନ୍ତର୍ହାସଲସତ୍କପୋଳଫଳକାଂ ଧୂର୍ତ୍ତୋଽପରାଂ ଚୁମ୍ବତି ॥

( ୧୮ )

ଅନ୍ଧଂ ତେନାହୃତା କମପି କଥୟାମୀତ ବ୍ରଜନେ
ସମୀପେ ଗୃସୀନା ସରସହୃଦୟତ୍ୱାଦବହୃତା ।
ତତଃ କର୍ଣ୍ଣୋପାନ୍ତେ କମପି ବଦତାଘ୍ରାୟ ବଦନଂ
ଚୃମ୍ବିତା ଧର୍ମ୍ମିଲ୍ଲେ·ସଖି !.ସ ଚ ମୟା ଗାଢ଼ମଧରେ ॥

( ୧୯ )

ନିଃଶେଷଚ୍ୟୁତଚନ୍ଦନଂ ସ୍ତନତଟଂ ନିର୍ମ୍ମୃଷ୍ଟରାଗୋଽଧରୋ
ନେତ୍ରେ ଦୂରମନଞ୍ଜନେ ପୁଲକିତା ତନ୍ୱୀ ତବେୟଂ ତନୁଃ ।
ମିଥ୍ୟାବାଦିନି ଦୂତି ! ବାନ୍ଧବଜନସ୍ୟାଜ୍ଞାତ ପୀଡ଼ାଗମେ !
ବାପୀଂ ସ୍ନାତୁମିତୋ ଗତାସି ନ ପୁନସ୍ତସ୍ୟାଧମସ୍ୟାନ୍ତିକମ୍ ॥

( ୨୦ )

ଆୟାତେ ଦୟିତେ ମନୋରଥଶତୈର୍ନୀତ୍ୱା କଥଂଚିଦ୍ଦିନଂ
ବୈଦଗ୍ଧ୍ୟାପଗମାଜ୍ଜଡେ ପରିଜନେ ଦୀର୍ଘାଂ କଥାଂ କୁର୍ବତି ।
ଦଷ୍ଟାସ୍ମୀତ୍ୟଭିଧାୟ ସତ୍ୱର ପଦଂ ବ୍ୟାଧୂୟ ଚୀନାଂଶୁକଂ
ତନ୍ୱଙ୍ଗ୍ୟା ରତିକାତରେଣ ମନସା ନୀତଃ ପ୍ରଦୀପଃ ଶମମ୍ ॥

( ୨୧ )

ଶ୍ରୁତ୍ୱା ନାମାପି ଯସ୍ୟ ସ୍ଫୁଟଘନପୁଲକଂ ଜାୟତେଽଙ୍ଗଂ ସମନ୍ତା—
ଦ୍ଦୃଷ୍ଟ୍ୱା ଯସ୍ୟାନନେନ୍ଦୁଂ ଭବତି ବପୁରିଦଂ ଚନ୍ଦ୍ରକାନ୍ତାନୁକାରି
ତସ୍ମିନ୍ନାଗତ୍ୟ କଣ୍ଠଗ୍ରହନିକଟପଦସ୍ଥାୟିନି ପ୍ରାଣନାଥେ
ଭଗ୍ନା ମାନସ୍ୟ ଚିନ୍ତା ଭବତି ମୟି ପୁନର୍ବଜ୍ରମୟ୍ୟାଂ କଥଂଚିତ୍ ।

( ୨୨ )

ଚରଣରଣଦଶୋଣରତ୍ୟକଣ୍ଠାଶ୍ଳଥୀକୃତଗାଢ଼ବନ୍ଧୋ—
ର୍ନବମିବ ଜଗଚ୍ଛାନ୍ତଂ ଭୂୟୁଷ୍ଟିରଦଭନନ୍ଦତୋଃ ।
କଥମିବ ଦିନେ ପାର୍ଶ୍ୱେ ଯାତେ ନିଶାମଧିରୂଢ଼ୟୋଃ
ପ୍ରସରତି କଥା ବହ୍ୱୀ ଦୂନୋର୍ଯଥା ନ ତଥା ରତିଃ ॥

( ୨୩ )

ପ୍ରାତଃପ୍ରାତରୁପାଗତେନ ଜନିତା ନିର୍ନିଦ୍ରତା ଚକ୍ଷୁଷୋ—
ର୍ମନ୍ଦାସ୍ୟା ମମ ଗୌରବଂ ବ୍ୟପଗତଂ ପ୍ରୋତ୍ପାଦିତଂ ଲାଘବମ୍ ।
କିଂ ତଦ୍ୟନ୍ନ କୃତଂ ତ୍ୱୟା ମରଣଶର୍ମ୍ମ ତ୍ୱା ମୟା ଗମ୍ୟତାଂ
ଦୁଃଖଂ ତିଷ୍ଠସି ଯତ୍ର ପଥ୍ୟମଧୁନା କର୍ତ୍ତାସ୍ମି ତଚ୍ଛ୍ରେୟସି ॥

( ୧୪ )

ତଦ୍ବକ୍ତ୍ରାଭିମୁଖଂ ମୁଖଂ ବିନମିତଂ ଦୃଷ୍ଟି କୃତା ପାଦୟୋ—
ସ୍ତସ୍ୟାଲାପକୁତୂହଳାକୁଳତରେ ଶ୍ରୋତ୍ରେ ନିରୁଦ୍ଧେ ମୟା ।
ପାଣିଭ୍ୟାଂ ଚ ତିରସ୍କୃତଃ ସପୁଲକଃ ସ୍ୱେଦୋଦଗ୍‌ମୋ ଗଣ୍ଡୟୋଃ
ସଖ୍ୟଃ ! କିଂ କରବାଣି ଯାନ୍ତି ଶତଧା ଯତ୍କଞ୍ଚୁକେ ସନ୍ଧୟଃ ॥

( ୧୫ )

କପୋଳେ ପତ୍ରାଳୀ କରତଳନିରୋଧେନ ମୃଦିତା
ନିପୀତୋ ନିଃଶ୍ୱାସୈରୟମମୃତହୃଦ୍ୟୋଽଧରରସଃ ।
ମୂହୁଃ କଣ୍ଠେ ଲଗ୍ନସ୍ତରଳୟତି ବାଷ୍ପଃ ସ୍ତନତଟଂ
ପ୍ରିୟୋ ମନ୍ୟୁର୍ଜାତସ୍ତବ ନିରନୁରୋଧେ ! ନ ତୁ ବୟମ୍ ॥

( ୧୬ )

ପଟାଳଗ୍ନେ ପତ୍ୟୌ ନମୟତି ମୁଖଂ ଜାତବିନୟା
ହଠାଶ୍ଳେଷଂ ବାଞ୍ଛତ୍ୟପହରତି ଗାତ୍ରାଣି ନିଭୃତମ୍ ।
ନ ଶକ୍ନୋତ୍ୟାଖ୍ୟାତୁଂ ସ୍ମିତମୁଖସଖୀଦତ୍ତନୟନା
ହ୍ରିୟା ତାମ୍ୟତ୍ୟନ୍ତଃ ପ୍ରଥମପରିହାସେ ନବବଧୂଃ ॥

( ୧୭ )

ନଭସି ଜଳଦଲକ୍ଷ୍ମୀଂ ସାସ୍ରୁସ୍ତା ବୀକ୍ଷ୍ୟ ଦୃଷ୍ଟ୍ୟା
ପ୍ରବସସି ଯଦି କାନ୍ତେତ୍ୟର୍ଦ୍ଧମୁକ୍ତ୍ୱା କଥଂଚିତ୍ ।
ମମ ପଟମବଲମ୍ବ୍ୟ ପ୍ରୋଲ୍ଲିଖନ୍ତୀ ଧରିତ୍ରୀଂ
ଯଦନୁ କୃତବତୀ ସା ତନ୍ନ ବାଚ୍ୟେ ନିବୃତ୍ତାଃ ॥

( ୧୮ )

ଏକତ୍ରାସନସଂସ୍ଥିତିଃ ପରିହୃତା ପ୍ରତ୍ୟୁଦ୍‌ଗମାଦ୍ଦୂରତ—
ସ୍ତାମ୍ବୂଳାହରଣଚ୍ଛଳେନ ରଭସାଶ୍ଳେଷୋଽପି ସଂବିଘ୍ନିତଃ ।
ଆଳାପୋଽପି ନ ମିଶ୍ରିତଃ ପରିଜନଂ ବ୍ୟାପାରୟନ୍ତ୍ୟାନ୍ତିକେ
କାନ୍ତଂ ପ୍ରତ୍ୟୁପଚାରତଶ୍ଚତୁରୟା କୋପଃ କୃତାର୍ଥୀକୃତଃ ॥

( ୧୯ )

ଶଠାନ୍ୟସ୍ୟାଃ କାଞ୍ଚୀମଣିରଣିତମାକର୍ଣ୍ଣ୍ୟ ସହସା
ଯଦାଶ୍ଳିଷ୍ୟନ୍ନେବ ପ୍ରଶିଥିଳଭୁଜଗ୍ରନ୍ଥିରଭବଃ ।
ତଦେତତ୍ କ୍ୱାଚକ୍ଷେ ଘୃତମଧୁମୟତ୍ୱଦ୍ବହୁବଚୋ—
ବିଷେଣାଘୂର୍ଣ୍ଣନ୍ତୀ କିମପି ନ ସଖୀ ମେ ଗଣୟତି ॥

( ୩୦ )

ସେହନ୍ତ୍ରୌ ପ୍ରଥମଂ ମନୋରଥି ଭବ ପ୍ରାପ୍ତୌ ବିବୃଦ୍ଧିଂ ସ୍ତନୌ
ସଲାପାସ୍ତବ ବାଲ୍ୟଭଙ୍ଗିମିଳନାନ୍ତୌ ଗ୍ଧଂ ପରଂ ତ୍ୟାଜିତାଃ ।
ଧାତ୍ରୀକଣ୍ଠମପାସ୍ୟ ବାହୁଲତିକେ କଣ୍ଠେ ତବାସଞ୍ଜିତେ
ନିର୍ଦାକ୍ଷିଣ୍ୟଂ ! କରେମି କିଂ ନୁ ବିଶିଖାପେକ୍ଷା ନ ପନ୍ଥାସ୍ତବ ॥

( ୩୧ )

ସ୍ଫୁଟତୁ ହୃଦୟଂ କାମଃ କାମଂ କରୋତୁ ତନୁଂ ତନୁଂ
ନ ସଖି ! ଚପଲପ୍ରେମ୍ଣା କାର୍ଯ୍ୟଂ ପୁନର୍ଦୟିତେନ ମେ ।
ଇତି ସରଭସ ମାନାବେଗାଦୁଦୀର୍ଯ୍ୟ ବଚସ୍ତୟା
ରମଣପଦବୀ ସାରଙ୍ଗାକ୍ଷ୍ୟା ସସମ୍ଭ୍ରମମୀକ୍ଷିତା ॥

( ୩୨ )

ସ୍ୱିନ୍ନଂ କେନ ମୁଖଂ ଦିବାକରକରୈସ୍ତେ ରାଗିଣୀ ଲୋଚନେ
ରୋଷାତ୍ତଦ୍ୱଚନୋଦ୍ଭବାଦ୍ବିଲୁଳିତା ନୀଳାଳକା ବାୟୁନା ।
ଭ୍ରଷ୍ଟଂ କୁଙ୍କୁମମୁଦ୍ଧତସ୍ତନକଷଣାତ୍ କ୍ଳାନ୍ତାସି ଗତ୍ୟାଗତୈ—
ରୂକ୍ଷଂ ତସ୍ତ୍ରକଳଂ କିମତ୍ର ବଦ ହେ ଦୂତି ! କ୍ଷତସ୍ୟାଧରେ ॥

( ୩୩ )

ଦତ୍ତୋଽସ୍ୟାଃ ପ୍ରଣୟସ୍ତ୍ୱୟୈବ ଭବତେଦେୟଂ ଚିରଂ ଲାଳିତା
ଦୈବାଦଦ୍ୟ କିଳ ତ୍ୱମେବ କୃତବାନସ୍ୟା ନବଂ ବିପ୍ରିୟମ୍ ।
ମନ୍ୟୁର୍ଦୁଃସହ ଏବ ଯାତ୍ୟୁପଶମଂ ନୋ ସାନ୍ତ୍ୱବାଦୈଃ ସ୍ଫୁଟଂ
ହେ ନିସ୍ତ୍ରିଂଶ ! ବିମୁକ୍ତକଣ୍ଠକରୁଣଂ ତାବତ୍ସଖୀ ରୋଦତୁ ॥

( ୩୪ )

କୋପାତ୍କୋମଳଲୋଲବାହୁଲତିକାପାଶେନ ବଦ୍ଧ୍ୱା ଦୃଢ଼ଂ
ନୀତ୍ୱା ବାସନିକେତନଂ ଦୟିତୟା ସାୟଂ ସଖୀନାଂ ପୁରଃ ।
ଭୂୟୋଽପ୍ୟେବମିତି ସ୍ଖଳନ୍ମୃଦୁଗିରା ସଂସୂଚ୍ୟ ଦୁଶ୍ଚେଷ୍ଟିତଂ
ଧନ୍ୟୋ ହନ୍ୟତ ଏବ ନିହ୍ନୁତିପରଃ ପ୍ରେୟାନ୍ ରୁଦତ୍ୟା ହସନ୍ ॥

( ୩୫ )

କଥମପି ସଖି ! କ୍ରୀଡ଼ାକୋପାଦ୍ ବ୍ରଜେତି ମୟୋଦିତେ
କଠିନହୃଦୟସ୍ତ୍ୟକ୍ତ୍ୱା ଶୟ୍ୟାଂ ବଲାଦ୍ଗତ ଏବ ସଃ ।
ଇତି ସରଭସଂ ଧ୍ୱସ୍ତପ୍ରେମ୍ଣି ବ୍ୟପେତଘୃଣେ ସ୍ପୃହାଂ
ପୁନରପି ହତବ୍ରୀଡ଼ଂ ଚେତଃ କରୋତି କରୋମି କିମ୍ ॥

( ୩୬ )

ଦମ୍ପତ୍ୟୋର୍ନିଶି ଜଲ୍ପତୋର୍ଗୃହଶୁକେନାକର୍ଣ୍ଣିତଂ ଯଦ୍ବଚ—
ସ୍ତତ୍ପ୍ରାତର୍ଗୁରୁସଂନିଧୌ ନିଗଦତଃ ଶ୍ରୁତ୍ୱୈବ ତାରଂ ବଧୂଃ ।
କର୍ଣ୍ଣାଲମ୍ବିତପଦ୍ମରାଗଶକଲଂ ବିନ୍ୟସ୍ୟ ଚଞ୍ଚ୍ୱାଃ ପୁରେ
ବ୍ରୀଡ଼ାର୍ତ୍ତା ପ୍ରକରୋତି ଦାଡ଼ିମଫଲବ୍ୟାଜେନ ବାଗ୍ବନ୍ଧନମ୍ ॥

( ୩୭ )

ଅଙ୍କେନେନ ପରନ୍ତ୍ୱ, ଖ୍ରୀଂ ପଶଭବାଦାଶ୍ଲିଷ୍ୟ ମାଂ ଦୁଃଖିତାଂ
କିଂ ଲବ୍ଧଂ ଶଠ ! ଦୁର୍ନୟେନ ନୟତା ସୌଭାଗ୍ୟମେତାଂ ଦଶାମ୍
ପଶ୍ୟୈତଦ୍ଦୟିତାକୁଚବ୍ୟତିକରୋନ୍ମୃଷ୍ଟାଙ୍ଗରାଗାରୁଣାଂ
ବକ୍ଷସ୍ତେ ମଲତୈଲପଙ୍କଶବଲୈର୍ବେଣୀପଦୈରଙ୍କିତମ୍ ॥

( ୩୮ )

ପଶ୍ୟାମୋ ମୟି କିଂ ପ୍ରପଦ୍ୟତ ଇତି ସ୍ଥୈର୍ଯ୍ୟଂ ମୟାଲମ୍ବିତଂ
କିଂ ମାଂ ନାଲପତୀତ୍ୟୟଂ ଖଳୁ ଶଠଃ କୋପସ୍ତୟାପ୍ୟାଶ୍ରିତଃ ।
ଇତ୍ୟନ୍ୟୋନ୍ୟବିଲକ୍ଷଦୃଷ୍ଟିଚତୁରେ ତସ୍ମିନ୍ନବସ୍ଥାନ୍ତରେ
ସବ୍ୟାଜଂ ହସିତଂ ମୟା ଧୃତିହରୋ ବାଷ୍ପସ୍ତୁ ମୁକ୍ତସ୍ତୟା ॥

( ୩୯ )

ମଲୟମରୁତାଂ ବ୍ରାତା ଯାତା ବିକାସିତମଲ୍ଲିକା
ପରିମଲଭରୋ ଭଗ୍ନୋ ଗ୍ରୀଷ୍ମସ୍ତ୍ୱମୁତ୍ସହସେ ଯଦି ।
ଘନ ! ଘଟୟିତୁଂ ତଂ ନିଃସ୍ନେହଂ ଯ ଏବ ନିବର୍ତ୍ତନେ
ପ୍ରଭବତି ଗବାଂ କିଂ ନଶ୍ଛିନ୍ନଂ ସ ଏବ ଧନଞ୍ଜୟଃ ॥

( ୪୦ )

ପ୍ରସ୍ଥାନଂ ବଲୟୈଃ କୃତଂ ପ୍ରିୟସଖୈରସ୍ରୈରଜସ୍ରଂ ଗତଂ
ଧୃତ୍ୟା ନ କ୍ଷଣମାସିତଂ ବ୍ୟବସିତଂ ଚିତ୍ତେନ ଗନ୍ତୁଂ ପୁରଃ ।
ଯାତୁଂ ନିଶ୍ଚିତଚେତସି ପ୍ରିୟତମେ ସର୍ବେ ସମଂ ପ୍ରସ୍ଥିତା
ଗନ୍ତବ୍ୟେ ସତି ଜୀବିତ ! ପ୍ରିୟସୁହୃତ୍ସାର୍ଥଃ କିମୁ ତ୍ୟଜ୍ୟତେ ॥

( ୪୧ )

ଦୃଷ୍ଟଃ ଦୂରମୁପାଗତେ ବିବଲିତଂ ସମ୍ଭାଷିଣି ସ୍ଫାରିତଂ
ସଶ୍ଳିଷ୍ୟତ୍ୟରୁଣଂ ଗୃହୀତବସନେ କୋପାଞ୍ଚିତଭ୍ରୂଲତମ୍ ।
ମାନିନ୍ୟାଶ୍ଚରଣାନତିବ୍ୟତିକରେ ବାଷ୍ପାମ୍ବୁପୂର୍ଣ୍ଣେକ୍ଷଣଂ
ଚକ୍ଷୁର୍ଜାତମହୋ ପ୍ରପଞ୍ଚଚତୁରଂ ଜାତାଗସି ପ୍ରେୟସି ॥

( ୦୨ )

ହାଲେ ! ନାଥ ! ବିମୁଞ୍ଚ ମାନିନି ! ରୁଷଂ ରୋଷାନ୍ମୟା କିଂ କୃତଂ
ଖେଦୋଽସ୍ମାସୁ ନ ମେଽପରାଧ୍ୟତି ଭବାନ୍ ସର୍ବେଽପରାଧା ମୟି ।
ତତ୍କିଂ ରୋଦିଷି ଗଦ୍‌ଗଦେନ ବଚସା କସ୍ୟାଗ୍ରତୋ ରୁଦ୍ୟତେ
ନନ୍ୱେତନ୍ମମ କା ତବାସ୍ମି ଦୟିତା ନାସ୍ମୀତ୍ୟତୋ ରୁଦ୍ୟତେ ॥

( ୪୩ )

ଲଗ୍ନା ନାଂଶୁକପଲ୍ଲବେ ଭୁଜଲତା ନ ଦ୍ୱାରଦେଶେଽର୍ପିତା
ନୋ ବା ପାଦଯୁଗେ ସ୍ୱୟଂ ନିପତିତଂ ତିଷ୍ଠେତି ନୋକ୍ତଂ ବଚଃ ।
କାଲେ କେବଲମମ୍ବୁଦାଲିମଲିନେ ଗନ୍ତୁଂ ପ୍ରବୃତ୍ତଃ ଶଠ—
ସ୍ତନ୍ୱ୍ୟା ବାଷ୍ପଜଲୌଘକଳ୍ପିତନଦୀପୂରେଣ ରୁଦ୍ଧଃ ପ୍ରିୟଃ ॥

( ୪୪ )

ତଥାଭୂଦସ୍ମାକଂ ପ୍ରଥମମବିଭକ୍ତା ତନୁରିୟଂ
ତତୋ ନ ତ୍ୱଂ ପ୍ରେୟାନହମପି ହତାଶା ପ୍ରିୟତମା ।
ଇଦାନୀଂ ନାଥସ୍ତ୍ୱଂ ବୟମପି କଲତ୍ରଂ କିମପରଂ
ମୟାପ୍ତଂ ପ୍ରାଣାନାଂ କୁଲିଶକଠିନାନାଂ ଫଲମିଦମ୍ ॥

( ୪୫ )

ଅନାଲୋଚ୍ୟ ପ୍ରେମ୍ଣଃ ପରିଣତିମନାଦୃତ୍ୟ ସୁହୃଦ—
ସ୍ତ୍ୱୟାକାଣ୍ଡେ ମାନଃ କିମିତି ସରଲେ ! ସପ୍ରତ କୃତଃ ।
ସମାକୃଷ୍ଟା ହ୍ୟେତେ ପ୍ରଳୟଦହନୋଦ୍ଭାସୁରଶିଖାଃ
ସ୍ୱହସ୍ତେନାଙ୍ଗାରାସ୍ତଦଲମଧୁନାରଣ୍ୟରୁଦିତୈଃ ॥

( ୪୬ )

ଜାତା ନୋତ୍କଳିକା ସ୍ତନୌ ନ ଲୁଲିତୌ ଗାତ୍ରଂ ନ ରୋମାଞ୍ଚିତଂ
ବକ୍ତ୍ରଂ ସ୍ୱେଦକଣାନ୍ୱିତଂ ନ ସହସା ଯାବଚ୍ଛଠେନାମୁନା ।
ଦୃଷ୍ଟେନୈବ ମନୋ ହୃତଂ ଧୃତିମୁଷା ପ୍ରାଣେଶ୍ୱରେଣାଦ୍ୟ ମେ
ତତ୍କେନାତ୍ର ନିରୂପ୍ୟମାଣନିପୁଣୋ ମାନଃ ସମାଧୀୟତାମ୍ ॥

( ୪୭ )

ଭ୍ରୂଭେଦୋ ଗୁଣିତଶ୍ଚିରଂ ନୟନୟୋରଭ୍ୟସ୍ତମାମୀଲନଂ
ରୋଦ୍ଧୁଂ ଶିକ୍ଷିତମାଦରେଣ ହସିତଂ ମୌନେଽଭିଯୋଗଃ କୃତଃ ।
ଧୈର୍ଯ୍ୟଂ କର୍ତ୍ତୁମପି ସ୍ଥିରୀକୃତମିଦଂ ଚେତଃ କଥଞ୍ଚିନ୍ମୟା
ବଦ୍ଧୋ ମାନପରିଗ୍ରହେ ପରିକରଃ ସିଦ୍ଧିସ୍ତୁ ଦୈବେ ସ୍ଥିତା ॥

( ୮ )

ଘୂର୍ଣ୍ଣରସନଦୀପୂରେଣୋଢ଼ାଃ ପୁନର୍ଗୁରୁସେତୁଭି—
ର୍ଯଦପି ବିଧୃତାସ୍ତିଷ୍ଠନ୍ତ୍ୟାରାଦପୂର୍ଣ୍ଣମନୋରଥାଃ ।
ତଦପି ଲିଖିତପ୍ରଖ୍ୟୈରଙ୍ଗୈଃ ପରସ୍ପରମୁନ୍ମୁଖା
ନୟନନଳିନୀନାଲାନୀତଂ ପିବନ୍ତି ରସଂ ପ୍ରିୟାଃ ॥

( ୪୯ )

ସାଲକ୍ତକେନ ନବପଲ୍ଲବକୋମଳେନ
ପାଦେନ ନୂପୁରବତା ମଦନାଳସେନ ।
ଯସ୍ତାଡ୍ୟତେ ଦୟିତୟା ପ୍ରଣୟାପରାଧା—
ତ୍ସୋଽଙ୍ଗୀକୃତୋ ଭଗବତା ମକରଧ୍ୱଜେନ ॥

( ୫୦ )

ରାମାଣାଂ ରମଣୀୟବକ୍ତ୍ରଶଶିନଃ ସ୍ୱେଦୋଦବିନ୍ଦୁପ୍ଲୁତୋ
ବ୍ୟାଲୋଲାମଳକାବଳୀଂ ପ୍ରଚଳୟନ୍ ଧୁନ୍ୱନ୍ନିତମ୍ବାଂଶୁକମ୍ ।
ପ୍ରାତର୍ବାତି ମଧୌ ବିକୃଷ୍ଟବିକଚଦ୍ରାଜୀବରାଜୀରଜୋ—
ଜାଲାମୋଦମନୋହରୋ ରତିରସଗ୍ଲାନିଂ ହରନ୍ମାରୁତଃ ॥

( ୫୧ )

ଅଙ୍ଗଂ ଚନ୍ଦନପାଣ୍ଡୁପଲ୍ଲବମୃଦୁସ୍ତାମ୍ବୂଲତାମ୍ରୋଽଧରୋ
ଧାରାଯନ୍ତ୍ରଜଲାଭିଷେକକଲୁଷେ ଧୌତାଞ୍ଜନେ ଲୋଚନେ ।
ଅନ୍ତଃପୁଷ୍ପସୁଗନ୍ଧିରାର୍ଦ୍ରକବରୀ ସର୍ବାଙ୍ଗଲଗ୍ନାମ୍ବରଂ
କାନ୍ତାନାଂ କମନୀୟତାଂ ବିଦଧତେ ଗ୍ରୀଷ୍ମେଽପରାହ୍ଣାଗମେ ॥

( ୫୨ )

ଶ୍ରୁତ୍ୱାଽଽକସ୍ମାନ୍ନିଶୀଥେ ନବଘନରସିତଂ ବିଶ୍ଲଥାଙ୍ଗଂ ପତନ୍ତ୍ୟାଃ
ଶଯ୍ୟାୟାଂ ଭୂମିପୃଷ୍ଠେ କରତଳଧୃତୟା ଦୁଃଖିତାଳୀଜନେନ ।
ସୋତ୍କଣ୍ଠଂ ମୁକ୍ତକଣ୍ଠଂ କଠିନକୁଚତଟୋପାନ୍ତବାଷ୍ପାଶ୍ରୁବିନ୍ଦୁ
ସ୍ମୃତ୍ୱା ସ୍ମୃତ୍ୱା ପ୍ରିୟସ୍ୟ ସ୍ଖଳିତମୃଦୁବଚୋ ରୁଦ୍ୟତେ ପାନ୍ଥବଧ୍ୱା ॥

( ୫୩ )

ପୀତୋ ଯତଃ ପ୍ରଭୃତି କାମପିପାସିତେନ
ତସ୍ୟା ମୟାଧରରସଃ ପ୍ରଚୁରଃ ପ୍ରିୟାୟାଃ ।
ତୃଷ୍ଣା ତତଃ ପ୍ରଭୃତି ମେ ଦ୍ୱିଗୁଣତ୍ୱମେତି
ଲାବଣ୍ୟମସ୍ତି ବହୁ ତତ୍ର କିମତ୍ର ଚିତ୍ରମ୍ ॥

( ୫୪ )

କ୍ୱ ପ୍ରସ୍ଥିତାସି କରଭୋରୁ ! ଘନେ ନିଶୀଥେ,
ପ୍ରାଣାଧିକୋ ବସତି ଯତ୍ର ଜନଃ ପ୍ରିୟୋ ମେ ।
ଏକାକିନୀ ବଦ କଥଂ ନ ବିଭେଷି ବାଲେ !
ନନ୍ୱସ୍ତି ପୁଙ୍ଖିତଶରୋ ମଦନଃ ସହାୟଃ ॥

( ୫୫ )

ଶୂନ୍ୟଂ ବାସଗୃହଂ ବିଲୋକ୍ୟ ଶୟନାଦୁତ୍ଥାୟ କିଞ୍ଚିଚ୍ଛନୈ—
ନିଦ୍ରାବ୍ୟାଜମୁପାଗତସ୍ୟ ସୁଚିରଂ ନିର୍ବର୍ଣ୍ଣ୍ୟ ପତ୍ୟୁର୍ମୁଖମ୍ ।
ବିସ୍ରବ୍ଧଂ ପରିଚୁମ୍ବ୍ୟ ଜାତପୁଲକାମାଲୋକ୍ୟ ଗଣ୍ଡସ୍ଥଲୀଂ
ଲଜ୍ଜାନମ୍ରମୁଖୀ ପ୍ରିୟେଣ ହସତା ବାଲା ଚିରଂ ଚୁମ୍ବିତା ॥

( ୫୬ )

ଭବତୁ ବିଦିତଂ ବ୍ୟର୍ଥାଲାପୈରଲଂ ପ୍ରିୟ ! ଗମ୍ୟତାଂ
ତନୁରପି ନ ତେ ଦୋଷୋଽସ୍ମାକଂ ବିଧିସ୍ତୁ ପରାଙ୍ମୁଖଃ ।
ତବ ଯଦି ତଥାରୂଢଂ ପ୍ରେମ ପ୍ରପନ୍ନମିମାଂ ଦଶାଂ
ପ୍ରକୃତିତରଲେ କା ନଃ ପୀଡା ଗତେ ହତଜୀବିତେ ॥

( ୫୭ )

ଯାବନ୍ତ୍ୟେବ ପଦାନ୍ୟଲୀକବଚନୈରାଲୀଜନୈଃ ପାଠିତା
ତାବନ୍ତ୍ୟେବ କୃତାଗସୋ ଦ୍ରୁତତରଂ ସଂଲପ୍ୟ ପତ୍ୟୁଃ ପୁରଃ ।
ପ୍ରାରବ୍ଧେ ପୁରତୋ ଯଥା ମନସିଜସ୍ୟେଚ୍ଛା ତଥା ବର୍ତ୍ତିତୁଂ
ପ୍ରେମ୍ଣୋ ମୌଗ୍ଧ୍ୟବିଭୂଷଣସ୍ୟ ସହଜ କୋଽପ୍ୟେଷ କାନ୍ତ କ୍ରମଃ ॥

( ୫୮ )

ଦେଶୈରନ୍ତରିତା ଶତୈଶ୍ଚ ସରିତାମୁର୍ବୀଭୃତାଂ କାନନୈ—
ର୍ଯତ୍ନେନାପି ନ ଯାତି ଲୋଚନପଥଂ କାନ୍ତେତି ଜାନନ୍ନପି ।
ଉଦ୍ଗ୍ରୀବଶ୍ଚରଣାର୍ଦ୍ଧରୁଦ୍ଧବସୁଧଃ ପ୍ରୋନ୍ମୃଜ୍ୟ ସାସ୍ରେ ଦୃଶୌ
ତାମାଶାଂ ପଥିକସ୍ତଥାପି କିମପି ଧ୍ୟାୟନ୍ ପୁନର୍ବୀକ୍ଷତେ ॥

( ୫୯ )

ପ୍ରିୟକୃତପଟପ୍ରେସ୍ୱଦୀର୍ଘାବନମ୍ରନବଦ୍ୱଲାଂ
ଶମୟି କରୁଣାଲୟାଂ ତନ୍ୱୀ ମୁଦୀକ୍ଷ୍ୟ ସସଂଭ୍ରମମ୍ ।
ଅପି ବଗଳତେ ଧୃତାଗାରେ ଗତେ ସୁରତାହବେ
ତ୍ରିଭୁବନମହାଧନ୍ୟୀ ସ୍ଥାନେ ନ୍ୟବର୍ତ୍ତିତ ମନ୍ମଥ ॥

( ୬୦ )

ସୁରତବିରତୌ ବ୍ରୀଡାବେଶାନ୍ମଣ୍ ଅଦୃଷ୍ଟୟା
ଉଦ୍ଧୃତି ଗଳିତଂ ତନ୍ୱା ପ୍ରାପ୍ତଂ ନ ଯାବଦମଂଶୁକମ୍ ।
ଉଦ୍ଧରପଜତେ ରତ୍ନୈରଙ୍କେ ରଙ୍କ ଶ୍ୟାମା ମଣିକାୟା
ପ୍ରିୟତମତନୌ ସର୍ବାଙ୍ଗୀଣଂ ଯବନ୍ଧନଯନ୍ତ୍ରଣା ॥

( ୬୧ )

ସ୍ନିଗ୍ଧାଲୋକମଦାପ୍ୟ ନୋଲଶ୍ୟୁନାଦ୍ ଗତ୍ୟା ନ୍ୟାନେ
ଜାନନ୍ନେ ନ ତ୍ରୁଟିତାଧରେଣ ଦଷ୍ଟଂ ଭ୍ରୂସଂଜ୍ଞୟା ଯାଚତେ ।
ଆଶ୍ଲିଷ୍ୟ ସ୍ତ୍ରିତପର୍ଣ୍ଣଗଣ୍ଡଫଲକଂ ନେଲାଞ୍ଚଲେନାନନଂ
ମନ୍ଦାନ୍ଦୋଳିତକୁଣ୍ଡଳପ୍ରଦନ୍ୟା ଉନ୍ନ୍ୟାନସ୍ତଂ ଶିରଃ ॥

( ୬୨ )

କାନ୍ତେ ତଲ୍ପମୁପାଗତେ ବିଗଳିତା ନୀବୀ ସ୍ୱୟଂ ବନ୍ଧନା—
ଦ୍ବାସୋ ବିଶ୍ଲଥମେଖଳାଗୁଣଧୃତଂ କିଂଚିନ୍ନିତମ୍ବେ ସ୍ଥିତମ୍ ।
ଏତାବତ୍ସଖି ! ବେଦ୍ମି ସାମ୍ପ୍ରତମହଂ ତସ୍ୟାଙ୍ଗସଙ୍ଗେ ପୁନଃ
କୋଽସୌ କାସ୍ମି ରତଂ ନୁ ବା କଥମିତି ସ୍ୱଳ୍ପାପି ମେ ନ ସ୍ମୃତିଃ ॥

( ୬୩ )

କାନ୍ତେ ସାଗସି ଶାପିତେ ପ୍ରିୟସଖୀବେଶଂ ବିଧାୟାଗତେ
ଭ୍ରାନ୍ତ୍ୟାଲିଙ୍ଗ୍ୟ ମୟା ରହସ୍ୟମୁଦିତଂ ତତ୍ସଂଗମାକାଙ୍କ୍ଷୟା ।
ମୁଗ୍ଧେ ! ଦୁଷ୍କରମେତଦିତ୍ୟତିତରାମୁଦ୍ଦାମହାସଂ ବଲା—
ଦାଶ୍ଲିଷ୍ୟ ଛଳିତାସ୍ମି ତେନ କିତବେନାଦ୍ୟ ପ୍ରଦୋଷାଗମେ ।

( ୬୪ )

ଦେଭିଦ୍ୱୈଶ୍ଲାଟ ଭ୍ରୂରାଜ୍ଞୟା କଲ ତନ୍ୱା ଚୂଡ଼େ ବଦ୍ଧ୍ୟତ୍ୟସ୍ଥେ
ଲଜ୍ଜାମନ୍ଥରୟା ତୟା କବର୍ଯ୍ୟେ ଭ୍ରାନ୍ତ୍ୟା ମନ୍ୟୁୟାଂଶୁକେ ।
ଦେହଂ ଶଙ୍କମୁଦ୍ ବଦନ୍ନହମଙ୍ଗ ସ୍ଥିତା ଯଦ୍କୋଽସ୍ମିନ୍ନା
ଦେବୋ ମୃତ୍ୟୁତ ଏଷ ଏବ ହି ନଦେତ୍ତ୍ୟନ୍ନ ବଧ୍ୟନ୍ତେ ॥

( ୬୫ )

କାନ୍ତାମୁଖଂ ସୁରତକେଳିବିମର୍ଦ୍ଦିତେ—
ସଂଜାତଘର୍ମକଣବଲ୍ଗୁ ଶନୈଃ ରତାନ୍ତେ ।
ଆପାଣ୍ଡୁରଂ ବଲସଦର୍ଦ୍ଧନିମୀଳିତାକ୍ଷଂ
ସଂଧ୍ୟାୟ ହେ ହୃଦୟ ! କିଂ ଶତଧା ନ ଯାସି ॥

( ୬୬ )

ପରାଚୀ କୋପେନ ସ୍ଫୁଟକପଟନିଦ୍ରାମୁକୁଳିତା
ପ୍ରବଣ୍ୟାଙ୍ଗେନାଙ୍ଗଂ ପ୍ରଣୟିନି ପରିରମ୍ଭଚତୁରେ ।
ଶନୈର୍ନୀବୀବନ୍ଧଂ ସ୍ପୃଶତି ସଭୟବ୍ୟାକୁଲକରଂ
ବଧ୍ୱେ ସଂକୋଚଗ୍ଲପିତମବଲମ୍ବଂ ଦରତନୁଃ ॥

( ୬୭ )

ଯୈବାହଂ ପ୍ରମଦା ନଖାମଧ୍ୟଗତାବେତୌ ଚ ତୌ ନୂପୁର-
ଦେଷାସ୍ୟାକମଚୂଡ଼ିରେବ ସହଜବ୍ରୀଡ଼ାଧନଃ ସ୍ତ୍ରୀଜନଃ ।
ଇତ୍ଥଂ ଲଜ୍ଜିତୟା ସ୍ପୃଷ୍ଟେରୂପଗମେ ମତ୍ୱା ତନୂଃ ସମ୍ମା-
ପ୍ତୁଂଶ୍ରବଃ ପ୍ରଥମଂ ରତବ୍ୟତିକରେ ମୁକ୍ତସ୍ତତୋ ବଞ୍ଚିତଃ ॥

( ୬୮ )

ଆସ୍ୟସ୍ତା କଳହଂ ପୁରେବ କୁରୁତେ ନସ୍ରଂସନେ ବାସସୋ
ଭଗ୍ନଭ୍ରୂରତଖଣ୍ଡ୍ୟମାନ ମଧରଂ ଧତ୍ତେ ନ କେଶଗ୍ରହେ ।
ଅଙ୍ଗାନ୍ୟର୍ପୟତି ସ୍ୱୟଂ ଭବତି ନୋ ବାମା ହଠାଲିଙ୍ଗନେ
ତନ୍ୱ୍ୟା ଶିକ୍ଷିତ ଏଷ ସମ୍ପ୍ରତି ପୁନଃ କୋଽପି ପ୍ରକାରେଽପରଃ ॥

( ୬୯ )

ଚରଣପତନଂ ସଖ୍ୟାଲାପା ମନୋହରଚାଟବଃ
କୃଶତରତନୋର୍ଗାଢ଼ାଶ୍ଳେଷୋ ହଠାତ୍ ପରିଚୁମ୍ବନମ୍ ।
ଇତି ହି ଚପଲମାନାରମ୍ଭସ୍ତଥାପି ହି ନୋତ୍ସହେ
ହୃଦୟ-ଦୟିତଃ କାନ୍ତଃ କାମଂ କିମତ୍ର କରୋମ୍ୟହମ୍ ॥

( ୭୦ )

ନିଃଶ୍ୱାସା ବଦନଂ ଦହନ୍ତି ହୃଦୟଂ ନିର୍ମୂଲମୁନ୍ମଥ୍ୟତେ
ନିଦ୍ରା ନୈତି ନ ଦୃଶ୍ୟତେ ପ୍ରିୟମୁଖଂ ନକ୍ତଂଦିବଂ ରୁଦ୍ୟତେ
ଅଙ୍ଗଂ ଶୋଷମୁପୈତି ପାଦପତିତଃ ପ୍ରେୟାଂସ୍ତଦୋପେକ୍ଷିତଃ
ସଖ୍ୟଃ ! କଂ ଗୁଣମାକଳଯ୍ୟ ଦୟିତେ ମାନଂ ବୟଂ କାରିତାଃ ॥

( ୭୧ )

ଲାକ୍ଷାଲକ୍ଷ୍ମ ଲଲାଟପଟ୍ଟମଭିତଃ କେୟୂରମୁଦ୍ରା ଗଳେ
ବକ୍ତ୍ରେ କଜ୍ଜଳକାଳିମା ନୟନୟୋସ୍ତାମ୍ବୂଲରାଗୋଽପରଃ ।
ଦୃଷ୍ଟ୍ୱା କୋପବିଧାୟି ମଣ୍ଡନମିଦଂ ପ୍ରାତଶ୍ଚିରଂ ପ୍ରେୟସୋ
ଲୀଲାତାମରସୋଦରେ ମୃଗଦୃଶଃ ଶ୍ୱାସାଃ ସମାପ୍ତିଂ ଗତା ॥



( ୭୨ )

ଗତେ ପ୍ରେମାବନ୍ଧେ ପ୍ରଣୟବହୁମାନେ ବିଗଳିତେ
ନିବୃତ୍ତେ ସଦ୍ଭାବେ ଜନ ଇବ ଜନେ ଗଚ୍ଛତି ପୁରଃ ।
ତଦୁତ୍ପ୍ରେକ୍ଷ୍ୟୋତ୍ପ୍ରେକ୍ଷ୍ୟ ପ୍ରିୟସଖି ! ଗତାଂସ୍ତାଂଶ୍ଚ ଦିବସାନ୍
ନ ଜାନେ କୋ ହେତୁର୍ଦଳତି ଶତଧା ଯନ୍ନ ହୃଦୟମ୍ ॥

( ୭୩ )

ମ୍ଳାନଂ ପାଣ୍ଡୁ କୃଶଂ ବିୟୋଗବିଧୁରଂ ଲମ୍ବାଳକଂ ସାଳସଂ
ଭୂୟସ୍ତତ୍‌କ୍ଷଣଜାତକାନ୍ତିରଭସପ୍ରାପ୍ତେ ମୟି ପ୍ରୋଷିତେ ।
ସାଟୋପଂ ରତକେଳିକାଳସରସଂ ରମ୍ୟଂ କିମପ୍ୟାଦରା—
ଦ୍ୟତ୍ପୀତଂ ସୁତନୋର୍ମୟା ବଦନକଂ ବକ୍ତୁଂ ନ ତତ୍ପାର୍ୟ୍ୟତେ ॥

( ୭୪ )

ଅଚ୍ଛିନ୍ନଂ ନୟନାମ୍ବୁ ବନ୍ଧୁଷୁ କୃତଂ ଚିନ୍ତା ଗୁରୁଷ୍ୱର୍ପିତା
ଦତ୍ତଂ ଦୈନ୍ୟମଶେଷତଃ ପରିଜନେ ତାପଃ ସଖୀଷ୍ୱାହିତଃ ।
ଅଦ୍ୟ ଶ୍ୱଃ ପରନିର୍ବୃତିଂ ଭଜତି ସା ଶ୍ୱାସୈଃ ପରଂ ଖିଦ୍ୟତେ
ବିସ୍ରବ୍ଧୋ ଭବ ବିପ୍ରୟୋଗଜନିତଂ ଦୁଃଖଂ ବିଭକ୍ତଂ ତୟା ॥

( ୭୫ )

ଚଳତୁ ତରଳା ଧୃଷ୍ଟା ଦୃଷ୍ଟିଃ ଖଳା ସଖି ! ମେଖଳା
ସ୍ଖଳତୁ କୁଚୟୋରୂରୁକମ୍ପାନ୍ନେ ବିଦୀର୍ଯ୍ୟତୁ କଞ୍ଚୁକମ୍ ।
ତଦପି ନ ମୟା ସନ୍ଧାବ୍ୟୋଽସୌ ପୁନର୍ଦୟିତଃ ଶଠଃ
ସ୍ଫୁଟତୁ ହୃଦୟଂ ମାନେନାନ୍ତର୍ନମେ ଯଦି ତତ୍‌କ୍ଷଣମ୍ ॥

( ୭୬ )

ଚକ୍ଷୁଃପ୍ରୀତିପ୍ରସକ୍ତେ ମନସି ପରିଚୟେ ଚିନ୍ତ୍ୟମାନାଭ୍ୟୁପାୟେ
ରାଗେ ଯାତେଽତିଭୂମିଂ ବିକସତି ସୁତରାଂ ଗୋଚରେ ଦୂତିକାୟାଃ ।
ଆସ୍ତାଂ ଦୂରେଣ ତାବତ୍ସରଭସଦୟିତାଲିଙ୍ଗନାନନ୍ଦଲାଭ—
ସ୍ତଦ୍‌ଗେହୋପାନ୍ତରଥ୍ୟାଭ୍ରମଣମପି ପରଂ ନିର୍ବୃତିଂ ସଂତନୋତି ॥

( ୭୭ )

ଲୋଲୈର୍ଲୋଚନବାରିଭିଃ ସଶପଥୈଃ ପାଦପ୍ରଣାମୈଃ ପ୍ରିୟୈ—
ରନ୍ୟାସ୍ତା ବିନିବାରୟନ୍ତି କୃପଣାଃ ପ୍ରାଣେଶ୍ୱରଂ ପ୍ରସ୍ଥିତମ୍ ।
ପୁଣ୍ୟାହଂ ବ୍ରଜ ମଙ୍ଗଳଂ ସୁଦିବସଃ ପ୍ରାତଃ ପ୍ରୟାତସ୍ୟ ତେ
ଯତ୍ସ୍ନେହୋଚିତମୀହିତଂ ପ୍ରିୟ ! ମୟା ତନ୍ନିର୍ଗତଃ ଶ୍ରୋଷ୍ୟସି ॥

( ୭୮ )

ଆସ୍ତାଂ ବିଶ୍ୱସନଂ ସଖୀଷୁ ବିଦିତାଭିପ୍ରାୟସାରେ ଜନେ
ତତ୍ରାପ୍ୟର୍ପୟିତୁଂ ଦୃଶଂ ସଲଜ୍ଜିତାଂ ଶକ୍ନୋମି ନ ବ୍ରୀଡ଼ୟା ।
ଲୋକୋଽପ୍ୟେଷ ପରୋପହାସଚତୁରଃ ସୂକ୍ଷ୍ମେଙ୍ଗିତଜ୍ଞୋଽପ୍ୟଲଂ
ମାତଃ ! କଂ ଶରଣଂ ବ୍ରଜାମି ହୃଦୟେ ଜୀର୍ଣ୍ଣୋଽନୁରାଗାନଲଃ ॥

( ୭୯ )

ଧାଣୌ ଦାଶଭରାଳସାମ୍ୟଦରବୋଦବଗ୍ନେନ ଜାତାଶ୍ରୁଣା
ପଞ୍ଚେନାନ୍ତବିୟୋଗଦୁଃଖପିଶୁନଂ ଗୀତଂ ତୟୋତ୍କଣ୍ଠୟା ।
ଆସ୍ତାଂ ଖେଦହାରଣଃ ପ୍ରବସନାଳାପସ୍ୟ ଫଳାର୍ଥିନଂ
ମାନସ୍ୟାପି ଜଲାଞ୍ଜଳିଃ ସରଭସଂ ଲୋକେନ ଦତ୍ତୋ ଯଥା ॥

( ୮୦ )

ଚରଣପତନପ୍ରତ୍ୟାଖ୍ୟାନ ପ୍ରସାଦପରାଙ୍ମୁଖେ
ନିଭୃତକିତବାଚାରେତ୍ୟୁକ୍ତେ ରୁଷା ପରୁଷୀକୃତେ ।
ବ୍ରଜତି ରମଣେ ନିଃଶ୍ୱସ୍ୟୋଚ୍ଚୈଃ ସ୍ତନାର୍ପିତହସ୍ତୟା
ନୟନସଲିଲଚ୍ଛନ୍ନା ଦୃଷ୍ଟିଃ ସଖୀଷୁ ନିପାତିତା ॥

( ୮୧ )

ଜଙ୍ଘାଯଲାପ୍ୟଂ ମୃଦ୍ଧା ମୃଦା ବମାର୍ଗିତ ଦାସୀ
ନିଜ ବ୍ରଜନାମାଲାଣେନ ପ୍ରଯାଯଣିଷାଂ ପ୍ରଣ ।
ଯୁଗଯୁଗ ମୁହୁଃ ପଯ୍ୟର୍ଣ୍ଣେ ବହତ୍ୟ ନାମାଙ୍କୁଲା
ସୁରତବିରତା ରମ୍ୟା ତନ୍ୱୀ ମୁହୁର୍ମୁହୁରୀକ୍ଷତେ ॥

( ୮୨ )

ଦୃଷ୍ଟ୍ୱା ନାଥରଦନେଧସ୍ୟା ଚରତରଂ ଦନ୍ତ୍ୟାଙ୍କିତଂ ଯାଚତଃ
ସଦ୍ୟାଦଂଶୁକପଲ୍ଲବେନ ବିଧୁତୋ ନିର୍ଯ୍ୟାଜମାଲିଙ୍ଗିତଃ ।
[illegible]ାକ୍ଷିପ୍ୟ ଯଦା ସମସ୍ତମନ୍ତୁଣୋ ଗନ୍ତୁଂ ପ୍ରବୃତ୍ତିଃ ଶଠଃ
[illegible] ପ୍ରାଣେଶ୍ୱରଗେହୋ ଦସ୍ୱିତ୍ୟା ମୁକ୍ତସ୍ତତୋ ବଲ୍ଲଭଃ ॥

( ୮୩ )

ପାଦାସକ୍ତେ ସୁଚିରମିହ ତେ ବାମତା କୈବ ମୁଗ୍ଧେ
ମନ୍ଦାରମ୍ଭେ ପ୍ରଣୟିନି ଜନେ କୋଽପରାଧୋପରୋଧଃ ।
ଇତ୍ଥଂ ତସ୍ୟାଃ ପରିଜନକଥାକୋମଲେ କୋପବେଗେ
ବାଷ୍ପୋଦ୍ଭେଦୈସ୍ତଦନୁ ସହସା ନ ସ୍ଥିତଂ ନ ପ୍ରବୃତ୍ତମ୍ ॥

( ୮୪ )

ନାର୍ଯ୍ୟୋ ମୁଗ୍‌ଧାଶଠା ହରନ୍ତି ରମଣଂ ତିଷ୍ଠନ୍ତି ନୋ ବାରିତା—
ସ୍ତତ୍କିଂ ତାମ୍ୟସି କିଂ ଚ ରୋଦିଷି ମୁଧା ତାସାଂ ପ୍ରିୟଂ ମା କୃଥାଃ ।
କାନ୍ତଃ କେଳିରୁଚିର୍ୟୁବା ସହୃଦୟସ୍ତାଦୃକ୍ ପତିଃ କାତରେ
କିଂ ନୋ ବର୍ବରକର୍କଶୈଃ ପ୍ରିୟଶତୈରାକ୍ରମ୍ୟ ବିକ୍ରୀୟତେ ॥

( ୮୫ )

ଧୀରଂ ବାରିଧରସ୍ୟ ବାରି କିରତଃ ଶ୍ରୁତ୍ୱା ନିଶୀଥେ ଧ୍ୱନିଂ
ଦୀର୍ଘୋଚ୍ଛ୍ୱାସମୁଦଶ୍ରୁଣା ବିରହିଣୀଂ ବାଲାଂ ଚିରଂ ଧ୍ୟାୟତା ।
ଅଧ୍ୱନ୍ୟେନ ବିମୁକ୍ତକଣ୍ଠମଖିଳାଂ ରାତ୍ରିଂ ତଥା କ୍ରନ୍ଦିତଂ
ଗ୍ରାମୀଣୈଃ ପୁନରଧ୍ୱଗସ୍ୟ ବସତିର୍ଗ୍ରାମେ ନିଷିଦ୍ଧା ଯଥା ॥

( ୮୬ )

କାଞ୍ଚ୍ୟା ଗାଢତରାବଦ୍ଧବସନାପ୍ରାନ୍ତା କିମର୍ଥଂ ପୁନ—
ର୍ମୁଗ୍‌ଧାକ୍ଷୀ ସ୍ୱପିତୀତି ତତ୍ପରିଜନଂ ସ୍ୱୈରଂ ପ୍ରିୟେ ପୃଚ୍ଛତି ।
ମାତଃ ସୁପ୍ତମପୀହ ବାରୟତି ମାମିତ୍ୟାହିତକ୍ରୋଧୟା
ପର୍ଯ୍ୟସ୍ୟ ସ୍ୱପନଚ୍ଛଲେନ ଶୟନେ ଦତ୍ତୋଽବକାଶସ୍ତୟା ॥

( ୮୭ )

କାନ୍ତଃପ୍ରବେଶମରୁଣଦ୍ୱିମୁଖୀ ନବୃସୀ—
ଦାତିଷ୍ଟା ରୋଷପରୁଷାଣି ନ ଗୃଷ୍ଟବାଣି ।
ଯା କେବଲଂ ସରଳପକ୍ଷ୍ମଭିରକ୍ଷିପାତୈଃ
କାନ୍ତଂ ବିଲୋକିତବତୀ ଜନନିର୍ବିଶେଷମ୍ ॥

( ୮୮ )

ଲିଖନ୍ନାସ୍ତେ ଭୂମିଂ ବହିରବନତଃ ପ୍ରାଣଦୟିତୋ
ନିରାହାରାଃ ସଖ୍ୟଃ ସତତରୁଦିତୋଚ୍ଛୂନନୟନାଃ ।
ପରିତ୍ୟକ୍ତଂ ସର୍ବଂ ହସିତପଠିତଂ ପଞ୍ଜରଶୁକୈ—
ସ୍ତବାବସ୍ଥା ଚେୟଂ ବିସୃଜ କଠିନେ ! ମାନମଧୁନା ॥

( ୮୯ )

ଯାତାଃ କିଂ ନ ମିଳନ୍ତି ସୁନ୍ଦର ! ପୁନଶ୍ଚିନ୍ତା ତ୍ୱୟା ମତ୍କୃତେ
ନୋ କାର୍ଯ୍ୟା ନିତରାଂ କୃଶାସି କଥୟତ୍ୟେବଂ ସବାଷ୍ପେ ମୟି ।
ଲଜ୍ଜାମନ୍ଥରତାରକେଣ ନିପତତ୍ପୀତାଶ୍ରୁଣା ଚକ୍ଷୁଷା
ଦୃଷ୍ଟ୍ୱା ମାଂ ହସିତେନ ଭାବିମରଣୋତ୍ସାହସ୍ତୟା ସୂଚିତଃ ॥

( ୯୦ )

ସନ୍ଧ୍ୟେବାଦ୍ୟ ଗୃହେ ଗୃହେ ଯୁବତୟସ୍ତାଃ ପୃଚ୍ଛ ଗତ୍ୱାଧୁନା
ପ୍ରେୟାଂସଃ ପ୍ରଣମନ୍ତି କିଂ ତବ ପୁନର୍ଦାସୋ ଯଥା ବର୍ତ୍ତତେ ।
ଆତ୍ମଦ୍ରୋହିଣି ! ଦୁର୍ଜନୈଃ ପ୍ରଲପିତଂ କର୍ଣ୍ଣେଽନଶଂ ମା କୃଥା—
ଶ୍ଛିନ୍ନସ୍ନେହରସା ଭବନ୍ତି ପୁରୁଷା ଦୁଃଖାନୁବର୍ତ୍ତ୍ୟାଃ ପୁନଃ ॥

( ୯୧ )

ଆଦୃଷ୍ଟି ପ୍ରସରାତ୍ ପ୍ରିୟସ୍ୟ ପଦବୀମୁଦ୍‌ବୀକ୍ଷ୍ୟ ନିର୍ବିଣ୍ଣୟା
ବିଚ୍ଛିନ୍ନେଷୁ ପଥିଷ୍ୱହଃପରିଣତୌ ଧ୍ୱାନ୍ତେ ସମୁତ୍ସର୍ପତି ।
ଦତ୍ତୈକଂ ସଶୁଚା ଗୃହଂ ପ୍ରତିପଦଂ ପାନ୍ଥସ୍ତ୍ରିୟାସ୍ମିନ୍ କ୍ଷଣେ
ମାଭୂଦାଗତ ଇତ୍ୟମନ୍ଦବଳିତଗ୍ରୀବଂ ପୁନର୍ବୀକ୍ଷିତମ୍ ॥

( ୯୨ )

ସୁତନୁ ! ଜହିହି ମୌନଂ ପଶ୍ୟ ପାଦାନତଂ ମାଂ
ନ ଖଳୁ ତବ କଦାଚିତ୍ କୋପ ଏବଂବିଧୋଽଭୂତ୍ ।
ଇତି ନିଗଦତି ନାଥେ ତିର୍ଯ୍ୟଗାମୀଲିତାକ୍ଷ୍ୟା
ନୟନ ଜଳମନଳ୍ପଂ ମୁକ୍ତମୁକ୍ତଂ ନ କିଞ୍ଚିତ୍ ॥

( ୯୩ )

ସା ବାଲା ବୟମପ୍ରଗଲ୍‌ଭମନସଃ ସା ସ୍ତ୍ରୀ ବୟଂ କାତରାଃ
ସା ପୀନୋନ୍ନତିମତ୍ପୟୋଧରଯୁଗଂ ଧତ୍ତେ ସଖେଦା ବୟମ୍ ।
ସାକ୍ରାନ୍ତା ଜଘନସ୍ଥଲେନ ଗୁରୁଣା ଗନ୍ତୁଂ ନ ଶକ୍ତା ବୟଂ
ଦୋଷୈରନ୍ୟଜନାଶ୍ରୟୈରପଟବୋ ଜାତାଃ ସ୍ମ ଇତ୍ୟଦ୍ଭୁତମ୍ ॥

( ୯୪ )

ବିରହବିଷମଃ କାମୋ ବାମସ୍ତନୁଂ କୁରୁତେ ତନୁଂ
ଦିବସଗଣନାଦକ୍ଷଶ୍ଚାୟଂ ବ୍ୟପେତଘୃଣୋ ଯମଃ ।
ତ୍ୱମପି ବଶଗୋ ମାନବ୍ୟାଧେର୍ବିଚିନ୍ତୟ ନାଥ ! ହେ
କିସଲୟମୃଦୁର୍ଜୀବେଦେବଂ କଥଂ ପ୍ରମଦାଜନଃ ?

( ୯୫ )

ଆଶଙ୍କ୍ୟ ପ୍ରଣତିଂ ପଟାନ୍ତପିହିତୌ ପାଦୌ କରୋତ୍ୟାଦରା—
ଦ୍ୟାଜେନାଗତମାବୃଣୋତି ହସିତଂ ନ ସ୍ପଷ୍ଟ ମୁଦ୍‌ବୀକ୍ଷତେ ।
ମୟ୍ୟାଲାପବତି ପ୍ରତୀପବଚନଂ ସଖ୍ୟା ସହାଭାଷତେ
ତନ୍ୱ୍ୟାସ୍ତିଷ୍ଠତୁ ନିର୍ଭରପ୍ରଣୟିତା ମାନୋଽପି ରମ୍ୟୋଦୟଃ ॥

( ୯୬ )

ଦୀର୍ଘା ବନ୍ଦନମାଳିକା ବିରଚିତା ଦୃଷ୍ଟ୍ୟୈବ ନେନ୍ଦୀବରୈଃ
ପୁଷ୍ପାଣାଂ ପ୍ରକରଃ ସ୍ମିତେନେ ରଚିତୋ ନୋ କୁନ୍ଦଜାତ୍ୟାଦିଭିଃ ।
ଦତ୍ତଃ ସ୍ୱେଦମୁଗ୍ଧ ପୟୋଧରଭରେଣାର୍ଘ୍ୟୋ ନ କୁମ୍ଭାମ୍ଭସା
ସ୍ୱୈରେବାବୟବୈଃ ପ୍ରିୟସ୍ୟ ବିଶତସ୍ତନ୍ୱ୍ୟା କୃତଂ ମଙ୍ଗଳମ୍ ॥

( ୯୭ )

ପ୍ରମ୍ଳାନେ ମାନେ ମୁଖଶଶିନି ତସ୍ୟାଃ କରଧୃତେ
ମୟି କ୍ଷୀଣୋପାୟେ ପ୍ରଣିପତନମାତ୍ରୈକଶରଣେ ।
ତୟା ପକ୍ଷ୍ମପ୍ରାନ୍ତଧ୍ୱଜପୁଟନିରୁଦ୍ଧେନ ସହସା
ପ୍ରସାଦୋ ବାଷ୍ପେଣ ସ୍ତନତଟବିଶୀର୍ଣ୍ଣେନ କଥିତଃ ॥

( ୯୮ )

ସା ପତ୍ୟୁଃ ପ୍ରଥମେଽପରାଧସମୟେ ସଖ୍ୟୋପଦେଶଂ ବିନା
ନୋ ଜାନାତି ସବିଭ୍ରମାଙ୍ଗବଲନାବକ୍ରୋକ୍ତିସଂସୂଚନମ୍ ।
ସ୍ୱଚ୍ଛୈରଚ୍ଛକପୋଲମୂଲଗଳିତୈଃ ପର୍ଯ୍ୟସ୍ତନେତ୍ରୋତ୍ପଳା
ବାଳା କେବଳମେବ ରୋଦିତି ଲୁଠଲ୍ଲୋଳୋଦକୈରଶ୍ରୁଭିଃ ॥

( ୯୯ )

ଅଦ୍ୟାରଭ୍ୟ ଯଦି ପ୍ରିୟେ ପୁନରହଂ ମାନସ୍ୟ ବାଽନ୍ୟସ୍ୟ ବା
ଗୃହ୍ଣୀୟାଂ ଶଠଦୁର୍ଣୟେନ ମନସା ନାମାପି ସଂକ୍ଷେପତଃ ।
ତତ୍ତେନୈବ ବିନା ଶଶାଙ୍କଧବଳାଃ ସ୍ପଷ୍ଟାଟ୍ଟହାସା ନିଶା
ଏକୋ ବା ଦିବସଃ ପୟୋଦମଳିନୋ ଯାୟାନ୍ମମ ପ୍ରାବୃଷି ॥

( ୧୦୦ )

ଉରୂଦ୍ୱୟଂ ମୃଗଦୃଶଃ କଦଳସ୍ୟ କାଣ୍ଡୌ
ମଧ୍ୟଂ ଚ ବେଦିରତୁଳଂ ସ୍ତନଯୁଗ୍ମମସ୍ୟାଃ ।
ଲାବଣ୍ୟବାରିପରିପୂରିତଶାତକୁମ୍ଭ—
କୁମ୍ଭୌ ମନୋଜନୃପତେରଭିଷେଚନାୟ ॥

—*—

ଶ୍ରୀ ଲୋକନାଥ ପ୍ରେସ, ବାପୁଜୀନଗର ଭୁବନେଶ୍ୱର— ୯



କବି ଶ୍ରୀ ଚମ୍ପତିରାୟଙ୍କ ଜନ୍ମ ୧୯୨୭ ମସିହା । ସ୍ଥାନ- ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ହଜଗ୍ରାମ--ଅମନ୍ଦଗାମିନୀ ନଦୀ ମନ୍ଦାକିନୀ କୂଳରେ । ୧୯୫୧ ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ପାଶ କରି ପ୍ରଜାତନ୍ତ୍ରର ସହ ସମ୍ପାଦକ ଓ ଝଙ୍କାରର ପରିଚାଳନା ସମ୍ପାଦକ ଦାୟିତ୍ୱ ବହନକଲେ ଦୀର୍ଘ ବାରବର୍ଷ କାଳ । ୧୯୫୭ରେ ସେ ରାଜ୍ୟ ବିଧାନସଭାକୁ ଲୋକ ପ୍ରତିନିଧି ଭାବେ ନିର୍ବାଚିତ ହେଲେ ଓ ଓଡ଼ିଶାରେ ଶତମାର୍ଗ ଆନ୍ଦୋଳନ ପ୍ରବର୍ତ୍ତନ କଲେ । ବର୍ତ୍ତମାନ ପ୍ରତ୍ୟକ୍ଷ ରାଜନୀତିରେ ଥାଇ ମଧ୍ୟ ସାହିତ୍ୟ ଓ ସଂସ୍କୃତିର ବିକାଶ ଲାଗି ସାଧନା ଚଳାଇଛନ୍ତି ।

ତାଙ୍କର ଅନ୍ୟାନ୍ୟ ପୁସ୍ତକ ଗୁଡ଼ିକ ମଧ୍ୟରୁ 'ଗାଁ ଗହଳେ' 'ତାଜମହଲ ଓ ଯମୁନା' ଓ 'ରକ୍ତ ବିଳାପ' ଓଡ଼ିଶାର ପାଠକ ମାନଙ୍କ ମଧ୍ୟରେ ଖୁବ୍ ଲୋକପ୍ରିୟତା ଅର୍ଜନ କରିଛି । ସେଗୁଡ଼ିକର ପୁନର୍ମୁଦ୍ରଣ ପାଇଁ ଆମେ ପ୍ରୟାସ କରୁଛୁ । "ପ୍ରୀତି-ଶତକ" ପାଠକ ପାଠିକାଙ୍କ ମନକୁ ପ୍ରୀତି ପୁଲକିତ କରୁ—ଏହା ହିଁ ଆମର କାମନା ।

ଆନନ୍ଦ ପ୍ରକାଶନୀ,
୪୦, ବୁଦ୍ଧନଗର,
ଭୁବନେଶ୍ୱର-୬